# ସହୀଦ ଭଗତ ସିଂହ



ଅକ୍ଷୟ କୁମାର ମିଶ୍ର

କଶୋର ସାହତ୍ୟ ମାଳା

# ଶହୀଦ ଭଗତ ସିଂହ

ଲେଖକ

**ଅଧ୍ୟାପକ ଅକ୍ଷୟକୁମାର ସିଂହ**

ପ୍ରକାଶକ

**ଜଗନ୍ନାଥ ରଥ**

ବନୋଦବହାରୀ, କଟକ-୨

# ଶହୀଦ ଭଗତ ସିଂହ

ଲେଖକ
ଅଧ୍ୟାପକ ଅକ୍ଷୟକୁମାର ସିଂହ

ପ୍ରକାଶକ
ଜଗନ୍ନାଥ ରଥ
ବିନୋଦବିହାରୀ କଟକ-୨

ପ୍ରଥମ ମୁଦ୍ରଣ
ମହାଦଶହରା, ୧୯୬୭

ମୂଲ୍ୟ
ଟ ୪.୫୦

ମୁଦ୍ରାକର
ଡାଲି ପ୍ରେସ
କଟକ

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ
ପ୍ରାଣପାତ କରିଥିବା ସେହି
ଅଗଣିତ ଶହୀଦଙ୍କ
ପବିତ୍ର ସ୍ମୃତି
ଉଦ୍ଦେଶ୍ୟରେ

# ଦୁଇପଦ

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସୈନିକ ଥିଲେ ସର୍ଦ୍ଦାର୍ ଭଗତ୍ ସିଂହ । ପରାଧୀନତାର କାରାଗାରରୁ ପ୍ରିୟ ମାତୃଭୂମିକୁ ମୁକ୍ତ କରିବା ପାଇଁ ସେ ନେଇଥିଲେ ବିପ୍ଳବପଥ । ନିରୀହ ଭାରତୀୟମାନଙ୍କ ଉପରେ ଇଂରେଜମାନଙ୍କ ଅତ୍ୟାଚାର କ୍ରମଶଃ ଅସହ୍ୟ ହୋଇ ପଡ଼ିଲା । ଫଳରେ ଭଗତ୍ ସିଂହ ଓ ତାଙ୍କର କତିପୟ ସହଯୋଗୀଙ୍କ ହୃଦୟରେ ଅତ୍ୟାଚାରୀ ଗୋରା ଅଫିସରଙ୍କ ବିରୁଦ୍ଧରେ ପ୍ରତିହିଂସା-ବହ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲା । ସେମାନେ କୌଶଳ ପୂର୍ବକ ଏହି ଅତ୍ୟାଚାରୀ ଓ ନିଷ୍ଠୁର ସାହେବ ମାନଙ୍କ ପ୍ରାଣ ନାଶ ଘଟାଇବା ନିମିତ୍ତ ବଦ୍ଧ ପରିକର ହେଲେ । ସେହି ସନ୍ତ୍ରାସବାଦ ଭାରତରେ ଥିବା ଶହ ଶହ ଇଂରେଜମାନଙ୍କ ହୃଦୟରେ ଦିନେ ଗଭୀର ଭୀତି ସଞ୍ଚାର କରିଥିଲା ଭଗତ୍ ସିଂହ, ଥିଲେ ସେ ସନ୍ତ୍ରାସବାଦର ଅନ୍ୟତମ ପୁରୋଧା । ଶତ୍ରୁ ସମ୍ମୁଖରେ ମୁଣ୍ଡ ନୁଆଁଇବାକୁ ସେ ଅଧର୍ମ ବୋଲି ବିଚାରୁଥିଲେ ।

ଦେଶର ଅଗଣିତ ଯୁବଜନ ହୃଦୟରେ ବ୍ରିଟିଶ-ବିରୋଧୀ ମନୋଭାବ ସୃଷ୍ଟି କରିବା ନିମିତ୍ତ ସେ ପ୍ରବଳ ଉଦ୍ୟମ କରିଥିଲେ । ତାଙ୍କରି ତତ୍ତ୍ୱାବଧାନରେ ଦେଶର ବିଭିନ୍ନ ସ୍ଥାନରେ ବହୁ ଷଡ଼ଯନ୍ତ୍ର ମୁଣ୍ଡ ଟେକିବାକୁ ଲାଗିଲା । ଏହି ଷଡ଼ଯନ୍ତ୍ରରେ ଅଂଶ ଗ୍ରହଣ କରିଥିବା ଯୁବକମାନେ ଇଂରେଜମାନଙ୍କ ବିରୁଦ୍ଧରେ ଏକ ପ୍ରକାର ଗରିଲା ଯୁଦ୍ଧ ଆରମ୍ଭ କରିଦେଲେ ।

ସୁଚିନ୍ତିତ ଯୋଜନା ନକରି ସେ କୌଣସି କାର୍ଯ୍ୟରେ ଅଗ୍ରସର ହେଉ ନଥିଲେ । ସନ୍ତ୍ରାସବାଦର ପୃଷ୍ଠପୋଷକ ଥିଲେ ମଧ୍ୟ ପ୍ରତ୍ୟକ୍ଷ ଭାବରେ ଲକ୍ଷ୍ୟ ସାଧନ କରୁନଥିବା କୌଣସି ହିଂସାତ୍ମକ କାର୍ଯ୍ୟରେ ଲିପ୍ତ ରହିବାକୁ ସେ ଅପରିଣାମଦର୍ଶିତାର ପରିଚାୟକ ବୋଲି ଭାବୁଥିଲେ ।

ସେ ରକ୍ତ ପିପାସୁ ନଥିଲେ । ବୃଥା ନରହତ୍ୟା କରି ଆନନ୍ଦ ଲାଭ କରିବାର ପୈଶାଚିକ ଅଭିଳାଷ ତାଙ୍କର ନଥିଲା । ପଞ୍ଜାବ କେଶରୀ ଲାଲା ଲଜପତ୍ ରାୟଙ୍କ ମୃତ୍ୟୁପାଇଁ ଦାୟୀ ଇଂରେଜ ପୁଲିସ ଅଫିସର୍ ସାଣ୍ଡର୍ସ ସାହେବଙ୍କ ହତ୍ୟା କରିଥିବାରୁ ସେ ସ୍ୱତଃ ଦୁଃଖ ପ୍ରକାଶ କରିଥିଲେ; ଏବଂ ଉକ୍ତ ସାହେବଙ୍କ ମୃତ୍ୟୁପାଇଁ ତାଙ୍କର କାର୍ଯ୍ୟ କଳାପ ଦାୟୀ ବୋଲି ଶେଷରେ ମତବ୍ୟକ୍ତ କରିଥିଲେ ।

ତ୍ରାସବାଦ ସପକ୍ଷରେ ସ୍ୱର ଉତ୍ତୋଳନ କରୁଥିଲେ ମଧ୍ୟ ଭଗତ୍ ସିଂହ କେବେହେଁ ଅହେତୁକ ଭାବେ ହିଂସାଭାବ ପ୍ରଦର୍ଶନ କରିନାହାନ୍ତି । ସେ କହୁଥିଲେ, "ମାନବ ଜୀବନକୁ ଆମେ ଭାଷାତୀତ ଭାବରେ ପବିତ୍ର ମନେକରୁ । ଅନ୍ୟକୁ ଆଘାତ ଦେବା ଅପେକ୍ଷା ସେହି ମାନବର ସେବା ପାଇଁ ଆମେ ଅତରେ ଆମର ପ୍ରାଣପାତ କରିବୁ ।" କେନ୍ଦ୍ର ଆସେମ୍ବ୍ଲି କକ୍ଷ ମଧ୍ୟକୁ ବୋମା ନିକ୍ଷେପ କରି ସେ କାରା ବରଣ କରିଥିଲେ । ଏ ଷଡ଼ଯନ୍ତ୍ରୀୟ ମାମଲାରେ ତାଙ୍କୁ ବିଚାରାଳୟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ନିଜ ସପକ୍ଷରେ ଯୁକ୍ତି ଦର୍ଶାଇ ଭଗତ୍ ସିଂହ ନିର୍ଭୀକ ଭାବରେ ବିଚାରକଙ୍କୁ କହିଥିଲେ, "ଯଦି କୌଣସି ବ୍ୟକ୍ତି ଗଭୀର ସତର୍କତାର ସହିତ କାହାରି ପ୍ରାଣନାଶ ନ କରିବା ଭଳି ବୋମା ପ୍ରସ୍ତୁତ କରେ ତେବେ ସେ ବ୍ୟକ୍ତିଙ୍କୁ ହତ୍ୟା-ଉଦ୍ୟମ ଅପରାଧରେ ଅପରାଧୀ କରାଯାଇ ପାରେ କି ?" ଏହା କହିବାର ଉଦ୍ଦେଶ୍ୟ ହେଉଛି ଆସେମ୍ବ୍ଲି ଗୃହ ମଧ୍ୟକୁ ସେ ଯେଉଁ ବୋମା ନିକ୍ଷେପ କରିଥିଲେ ତାହା ପ୍ରାଣନାଶ ଘଟାଇବା ଭଳି କୌଣସି ମାରାତ୍ମକ ଉପାଦାନରେ ଗଠିତ ହୋଇ ନଥିଲା । ଫଳରେ ଏହା ଆସେମ୍ବ୍ଲି ସଦସ୍ୟମାନଙ୍କ ମନରେ ଏକ ଆକସ୍ମିକ ଆଲୋଡ଼ନ ସୃଷ୍ଟି କରିବା ବ୍ୟତିରେକେ ସେମାନଙ୍କର ଅନ୍ୟ କୌଣସି ଶାରୀରିକ କ୍ଷତି ଘଟାଇ ପାରି ନଥିଲା । ଏଠାରେ ସେ ଜାଲିଆନୱାଲାବାଗ୍‌ରେ ଜେନେରାଲ ଡାଇଅର୍‌ଙ୍କ ଅମାନୁଷିକ ଅତ୍ୟାଚାର ବିଷୟ ଉଲ୍ଲେଖ କରି କହିଥିଲେ, "ଜେନେରାଲ୍ ଡାଇଅର୍ ଜାଲିଆନୱାଲାବାଗ୍‌ରେ ଶତ ଶତ ନରନାରୀଙ୍କ ପ୍ରାଣନାଶ ଘଟାଇଥିଲେ ମଧ୍ୟ ତାଙ୍କୁ କୌଣସି ମାମଲାର ସମ୍ମୁଖୀନ ହେବାକୁ ପଡ଼ି ନଥିଲା । ବରଂ ତାଙ୍କ ଦେଶବାସୀ ତାଙ୍କୁ ଏ କାର୍ଯ୍ୟପାଇଁ ଲକ୍ଷାଧିକ ଅର୍ଥ ପୁରସ୍କାର ସ୍ୱରୂପ ଦାନ କରିଥିଲେ । କିନ୍ତୁ ଆମେ ଏକ ସାଧାରଣ ବୋମା ପ୍ରସ୍ତୁତ କରି ଜାଣିଶୁଣି ଆସେମ୍ବ୍ଲି କକ୍ଷର ଏକ ଶୂନ୍ୟ ବେଞ୍ଚ ଉପରକୁ ଫିଙ୍ଗି ଥିଲୁଁ । ତଥାପି ନରହତ୍ୟା ଅପରାଧରେ ଅପରାଧୀ ଭାବରେ ଆମର ବିଚାର କରାଯାଉଛି । ଆମ ହୃଦୟରେ କାହାରି ପ୍ରତି ବିଦ୍ୱେଷଭାବ ନାହିଁ । ଆମର ଏକ ନିର୍ଦ୍ଦିଷ୍ଟ ଲକ୍ଷ ହାସଲ ପାଇଁ ଆମେ ଏ ପ୍ରକାର କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟ ପ୍ରଣାଳୀ ଗ୍ରହଣ କରିଅଛୁଁ ।" ଇଂରେଜ ବିଚାରକଙ୍କ ସମ୍ମୁଖରେ ଭଗତ୍ ସିଂହଙ୍କର ଏତାଦୃଶ ନିର୍ଭୀକ ଜବାବ ସୁଆଲର ପଟାନ୍ତର ନାହିଁ କହିଲେ ଚଳେ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଭଗତ ସିଂହଙ୍କ ଭୂମିକା କଣ ଥିଲା ତାହା ଏକାନ୍ତ ବର୍ଣ୍ଣନୀୟ । କେବଳ ନିଷ୍ଠୁର ଇଂରେଜ ପ୍ରଶାସକ ମାନେ ଯେ, ତାଙ୍କ ଗୁଳିର ନିଶାଣ ଥିଲେ ତାହା ନୁହେଁ, ସେ ଗୁଳିର ପ୍ରତିଧ୍ୱନି ବିଶ୍ୱବାସୀଙ୍କ ହୃଦୟରେ ସ୍ୱାଧୀନତାକାମୀ ଭାରତୀୟଙ୍କ ପ୍ରତି ଗଭୀର ସମ୍ବେଦନା ସୃଷ୍ଟି କରୁ ତାହା ଥିଲା ଭଗତ୍ ସିଂହଙ୍କର ଅନ୍ୟ ଏକ ବିଶିଷ୍ଟ ଲକ୍ଷ । ସନ୍ତ୍ରାସବାଦୀ କାର୍ଯ୍ୟକଳାପ ଦ୍ୱାରା ଇଂରେଜ ଶାସକଙ୍କ ହୃଦୟରେ ଭୟ ସୃଷ୍ଟି କରିବା ଥିଲା ତାଙ୍କର ଆଉ ଏକ ଉଦ୍ଦେଶ୍ୟ । ଭାରତୀୟ ଜନତା ଯେ, ଇଂରେଜ ଶାସନରେ ଅତିଶୟ ଅତିଷ୍ଠ ହୋଇ ପଡ଼ିଥିଲେ ସେ ସମ୍ବନ୍ଧରେ ବିଶ୍ୱବାସୀଙ୍କୁ ଅବଗତ କରାଇବା ପାଇଁ ସେ ଏ ପ୍ରକାର ସନ୍ତ୍ରାସବାଦୀ କାର୍ଯ୍ୟ କଳାପର ଆଶ୍ରୟ ନେଇଥିଲେ । ଦେଶ ବିଦେଶର ବହୁ ସମାଜବାଦୀ ରଚନା ଓ ସାହିତ୍ୟ ସଂଗ୍ରହ କରି ସେ ନିଜେ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଏହି ସମାଜବାଦ ମନ୍ତ୍ରରେ ସେ ତାଙ୍କର ସହଯୋଗୀମାନଙ୍କୁ ମଧ୍ୟ ଦୀକ୍ଷିତ କରିବା ପାଇଁ ଉଦ୍ୟମ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୁଝିବାକୁ ହେଲେ ଶାରୀରିକ ପ୍ରସ୍ତୁତି ସଙ୍ଗେ ସଙ୍ଗେ ମାନସିକ ପ୍ରସ୍ତୁତିର ଯେ ଯଥେଷ୍ଟ ଆବଶ୍ୟକତା ଅଛି ତାହା ସେ ସ୍ପଷ୍ଟରୂପେ ବୁଝାଇ ଦେଇଥିଲେ ।

କିନ୍ତୁ ଗଭୀର ପରିତାପର ବିଷୟ ଏହି ଯେ, ତାଙ୍କ ଉଦ୍ୟମ ଓ କାର୍ଯ୍ୟ କଳାପର ସୁଫଳ ଫଳିବା ପୂର୍ବରୁ ସେ ଇଂରେଜ ସରକାରଙ୍କ କ୍ରୂର ଶାସନର ଶିକାର ହେଲେ । ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖ ଦିନ ସୂର୍ଯ୍ୟାସ୍ତର ଠିକ୍ ପରେ ପରେ ଲାହୋର୍‌ର କେନ୍ଦ୍ର କାରାଗାର ମଧ୍ୟରେ ଏକ ବହ୍ନିମାନ ଆତ୍ମାର ଅବସାନ ଘଟିଲା । ଭଗତ୍ ସିଂହଙ୍କୁ ତାଙ୍କର ଅନ୍ୟ ଦୁଇ ସହଯୋଗୀ ରାଜଗୁରୁ ଓ ଶୁକଦେବଙ୍କ ସହିତ ଭଗତ୍ ସିଂହଙ୍କୁ ଫାଶୀ କାଠରେ ଝୁଲାଇ ଦିଆଗଲା । ମୃତ୍ୟୁର ମାତ୍ର ସପ୍ତାହକ ପୂର୍ବରୁ ଶୁକଦେବ ଯଥାର୍ଥରେ କହିଥିଲେ, "ଆମ୍ଭେମାନେ ମୃତ୍ୟୁ ବରଣ କରିପାରୁଁ, କିନ୍ତୁ ଆମ ମାତୃଭୂମିକୁ ରକ୍ତ ରଞ୍ଜିତ କରିଥିବା ନିର୍ମମ ସ୍ୱେଚ୍ଛାଚାରୀ ଶାସନର ଅବସାନ ଘଟାଇବାରେ ଯେ ଏହା ପ୍ରଥମ ସଙ୍କେତ ହେବ ସେଥିରେ ସନ୍ଦେହର ଅବକାଶ ନାହିଁ ।"

ମାତ୍ର ୨୨ ବର୍ଷ ବୟସରେ ଭଗତ୍ ସିଂହ ତାଙ୍କର ସହଯୋଗୀ ଶୁକଦେବ ଓ ରାଜଗୁରୁଙ୍କ ସହ ଶହୀଦ୍ ହେଲେ । ସମଗ୍ର ଦେଶରେ ଶୋକର ଛାୟା ଘୋଟିଗଲା । ଗାନ୍ଧୀଜୀ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । ସେ ଅହିଂସାର ପୂଜାରୀ ଥିଲେ ମଧ୍ୟ ଏହି ସନ୍ତ୍ରାସବାଦୀ ଯୁବକଙ୍କ ସମ୍ବନ୍ଧରେ ମନ୍ତବ୍ୟ ଦେଇ କହିଥିଲେ, "ଭଗତ୍ ସିଂହ ଓ ତାଙ୍କର ବନ୍ଧୁମାନେ ଶ୍ରେଷ୍ଠତମ ତ୍ୟାଗ ସ୍ୱୀକାର କରିଛନ୍ତି···ସ୍ୱାଧୀନତା ଲାଭ କରିବା ଦିଗରେ ଏହା ଆମ୍ଭମାନଙ୍କ ଶକ୍ତିକୁ ପରିବର୍ଦ୍ଧିତ କରିଅଛି ।"

ଭଗତ୍ ସିଂହଙ୍କ ଭଳି ଜଣେ ଯୁଗଜନ୍ମା ଯୁବକଙ୍କ ଜୀବନାଦର୍ଶ ଉପରେ କିଞ୍ଚିତ ଆଲୋକପାତ କରିବା ପାଇଁ ଏଠାରେ ଉଦ୍ୟମ କରାଯାଇଛି । ସେ ଦୀପ୍ତିମୟ ଆତ୍ମାର ସମୀକ୍ଷକ ସ୍ୱରୂପରେ ନିଜକୁ ପ୍ରତିପାଦିତ କରିବାର ଅପପ୍ରୟାସ ଲେଖକର ଧୃଷ୍ଟତା ବ୍ୟତୀତ-ଅନ୍ୟ କିଛି ନୁହେଁ । ଭଗତ୍ ସିଂହ ହେଉଛନ୍ତି କାଳଜୟୀ ପୁରୁଷ । କବିଙ୍କ ଭାଷାରେ "ମରିନାହିଁ..ସେ'ତ ମରଣ ଜୟୀ ।"

ଏ ପୁସ୍ତକ ଖଣ୍ଡି ରଚନା କରିବା ଦିଗରେ ଯେଉଁ କେତେଜଣ ସହୃଦୟ ବନ୍ଧୁ ମୋତେ ପ୍ରେରଣା ଯୋଗାଇଛନ୍ତି ସେମାନଙ୍କ ମଧ୍ୟରେ ମୋର ଅନୁଜ ପ୍ରତିମ ସହକର୍ମୀ ଅଧ୍ୟାପକ ଓ ଲବ୍‌ଧ ପ୍ରତିଷ୍ଠ ନାଟ୍ୟକାର ଶ୍ରୀ କାର୍ତ୍ତିକଚନ୍ଦ୍ର ରଥ ହେଉଛନ୍ତି ଅନ୍ୟତମ । ଏହା ତାଙ୍କ ବହୁମୂଲ୍ୟ ପ୍ରସ୍ତାବଟିର ସଫଳ ରୂପାୟନ ମାତ୍ର । ଶ୍ରୀଯୁକ୍ତ ଜଗନ୍ନାଥ ରଥ ବିନାଦ୍ୱିଧାରେ ଏ ପୁସ୍ତକଟି ପ୍ରକାଶ କରିବାର ଗୁରୁଦାୟିତ୍ୱ ବହନ କରିଥିବାରୁ ତାଙ୍କଠାରେ ମୁଁ ଗଭୀର ଭାବରେ କୃତଜ୍ଞ ।

| | |
|---|---|
| ମହୁଦା | ବିନୀତ |
| ଗହ୍ମା ପୂର୍ଣ୍ଣିମା | ଲେଖକ |
| ଗଣେଶଚତୁର୍ଥୀ, ୧୯୭୭ | |

# ସାମାନ୍ୟ କଥନ

ଅମର ଶହୀଦ୍ ସର୍ଦ୍ଦାର ଭଗତ୍ ସିଂହଙ୍କ ଆଦର୍ଶମୟ ଜୀବନୀ ଆଲୋଚନା କରିବା ପୂର୍ବରୁ ଯେଉଁ ପଞ୍ଜାବର ପାଣି ପବନରେ ତାଙ୍କର ଶରୀର ଓ ମନ ପୁଷ୍ଟ ହୋଇଥିଲା, ପ୍ରଥମେ ତାହାର ଏକ ସଂକ୍ଷିପ୍ତ ଇତିହାସ ଦେବା ଏକାନ୍ତ ଆବଶ୍ୟକ । ବହୁ ଶତ ବର୍ଷର ମୁସଲମାନ ଶାସନ ଏବଂ ପ୍ରାୟ ଦୁଇଶହ ବର୍ଷର ଇଂରେଜ ଶାସନ ପରେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତରେ ଜାତୀୟ ଚେତନାର ସୂତ୍ରପାତ ହୋଇଥିଲା । ଦେଶର ବିଭିନ୍ନ ପ୍ରାନ୍ତରେ ଲେଖକ, ବକ୍ତା, ବୁଦ୍ଧିଜୀବୀ ଏବଂ ସଂସ୍କାରକମାନେ ଭାରତକୁ ଏକ ସ୍ୱତନ୍ତ୍ର ଓ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବାର ସ୍ୱପ୍ନ ଦେଖିବାକୁ ଲାଗିଲେ । ପଞ୍ଜାବରେ ମହର୍ଷି ଦୟାନନ୍ଦ ସରସ୍ୱତୀ ଧର୍ମ ସଂସ୍କାର ପାଇଁ ଏକ ବ୍ୟାପକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ପ୍ରଚାର ସମୟରେ ମୁଖ୍ୟତଃ ସେ ଧର୍ମ ଉପରେ ଅଧିକ ଜୋର ଦେଉଥିଲେ ମଧ୍ୟ ତାଙ୍କ ଉପଦେଶଗୁଡ଼ିକରୁ ପଞ୍ଜାବରେ ରାଜନୈତିକ ଚେତନାର ଉଦ୍ଭବ ହୋଇଥିଲା । ସେ ଆର୍ଯ୍ୟ-ସଂସ୍କୃତିର ପ୍ରବର୍ତ୍ତକ ଥିଲେ । ତେଣୁ ବିଶ୍ୱର ଅନ୍ୟାନ୍ୟ ସଂସ୍କୃତି ଏପରିକି ଇଂରେଜ ସଂସ୍କୃତିଠାରୁ ମଧ୍ୟ ଭାରତୀୟ ସଂସ୍କୃତି ଯେ ଅଧିକ ଉନ୍ନତ ଓ ମହାନ୍ ତାହା ସେ ପ୍ରଚାର ମାଧ୍ୟମରେ ପ୍ରତିପାଦନ କରୁଥିଲେ । ଏ ପ୍ରକାର ଧର୍ମୋପଦେଶ ଦ୍ୱାରା ଲୋକଙ୍କ ମଧ୍ୟରେ ରାଜନୈତିକ ଚେତନା ଜାଗ୍ରତ ହେବା ସ୍ୱାଭାବିକ ଥିଲା ।

୧୯୦୪-୫ ମସିହାରେ ବିଖ୍ୟାତ ରୁଷ-ଜାପାନ ଯୁଦ୍ଧ ସଂଘଟିତ ହୋଇଥିଲା । ଏ ଯୁଦ୍ଧରେ ପ୍ରଥମଥର ପାଇଁ ଗୋଟିଏ ବିଶାଳ ଓ ଶକ୍ତିଶାଳୀ

ଇଉରୋପୀୟ ଶକ୍ତି ରୁଷିଆ) ଏସିଆର ଗୋଟିଏ କ୍ଷୁଦ୍ରାଦପି କ୍ଷୁଦ୍ର ଦେଶ (ଜାପାନ) ଦ୍ୱାରା ସମ୍ପୂର୍ଣ୍ଣରୂପେ ପରାଜିତ ହେଲା । ରୁଷିଆ ବିରୁଦ୍ଧରେ ଜାପାନର ବିଜୟ ସମ୍ବାଦ ଭାରତରେ ଅବସ୍ଥିତ ସ୍ୱାଧୀନଚେତା ବ୍ୟକ୍ତିଙ୍କ ହୃଦୟରେ ନୂତନ ଆଶା ଓ ଉତ୍ସାହ ଭରି ଦେଇଥିଲା । ଏହି ଯୁଦ୍ଧର ଫଳାଫଳ ବିଶ୍ୱବାସୀଙ୍କ ସମ୍ମୁଖରେ ପ୍ରମାଣ କରିଦେଲା ଯେ, ଉଦ୍ଧତ ଓ ଅହଙ୍କାରୀ ଇଉରୋପୀୟମାନେ ନିଜର ଶକ୍ତି ସାମର୍ଥ୍ୟ ବିଷୟରେ ଯେପରି ଆତ୍ମଗରିମା ଦେଖାନ୍ତି, ପ୍ରକୃତରେ ସେମାନେ ସେପରି ଶକ୍ତିଶାଳୀ ନୁହନ୍ତି । ଏ ସତ୍ୟଟିକୁ ଭାରତୀୟମାନେ ବେଶ ହୃଦୟଙ୍ଗମ କରିଥିଲେ । ତେଣୁ ଇଂରେଜ ଶକ୍ତି ବିରୁଦ୍ଧରେ ଲଢ଼ିବା ପାଇଁ ସେମାନେ ବିଶେଷ ଉତ୍ସାହୀ ହୋଇ ଉଠିଲେ । ଏ ଯୁଦ୍ଧରେ ଜାପାନୀମାନେ ଯେଉଁ ଦୃଢ଼ସଂକଳ୍ପ ଏବଂ ଆତ୍ମ-ତ୍ୟାଗର ମହାନ ଆଦର୍ଶ ଦେଖାଇ ଗଲେ, ତାହା ଭାରତୀୟ ଯୁବକମାନଙ୍କ ମନରେ ନୂତନ ଚେତନା ଜାଗ୍ରତ କଲା । ଏହି ନୂତନ ଜାତୀୟ ଚେତନା ଭାରତବର୍ଷର ବିଭିନ୍ନ ପ୍ରାନ୍ତରେ ସାମୂହିକ ଭାବରେ ଆତ୍ମପ୍ରକାଶ କରିବାକୁ ଲାଗିଲା । ୧୯୦୬-୭ ମସିହାରେ ପଞ୍ଜାବର ଗଭର୍ଣ୍ଣର ସାର୍ ଡି. ଇବାଟସନ୍ ପଞ୍ଜାବରେ ଏପ୍ରକାର ନବଜାଗରଣର ଉପସ୍ଥିତି ଅନୁଭବ କରି ପାରିଥିଲେ ଏବଂ ଏହାଦ୍ୱାରା ଭାରତରେ ଇଂରେଜ ଶାସନ ପାଇଁ କି କି ଅସୁବିଧା ସୃଷ୍ଟି ହୋଇପାରେ, ସେ ବିଷୟ ବର୍ଣ୍ଣନା କରି ସେ ଅବିଳମ୍ବେ ବଡ଼ଲାଟଙ୍କୁ ଜଣାଇ ଦେଇଥିଲେ ।

ପ୍ରାୟ ଏହି ସମୟରେ ବଙ୍ଗଳାରେ ବିଦ୍ରୋହ ଦେଖାଦେଲା । ସେଠାକାର ବୋମାକାଣ୍ଡ ଏବଂ ଇଂରେଜ ରାଜକର୍ମଚାରୀମାନଙ୍କ ଉପରେ ବିପ୍ଳବୀମାନଙ୍କ ପ୍ରତିଶୋଧମୂଳକ କାର୍ଯ୍ୟାନୁଷ୍ଠାନ ଇଂରେଜ ସରକାରଙ୍କୁ କ୍ରମଶଃ ଅତିଷ୍ଠ କରିପକାଇଲା । ପଞ୍ଜାବର ସ୍ୱାଧୀନତାକାମୀ ଯୁବକମାନେ ଏହାଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହେଲେ । ବଙ୍ଗାଳୀ ଯୁବକମାନଙ୍କ ପରି ସେମାନେ ମଧ୍ୟ ଇଂରେଜମାନଙ୍କ ବିରୁଦ୍ଧରେ ବିପ୍ଳବାତ୍ମକ ପନ୍ଥା ଅନୁସରଣ କରିବାକୁ ଲାଗିଲେ । ପୂର୍ବ-ପଞ୍ଜାବର କେତେକ ମୁସଲମାନ ଯୁବକ ସଶସ୍ତ୍ର ବିପ୍ଳବ ଦ୍ୱାରା ଭାରତବର୍ଷରୁ ଇଂରେଜ ଶାସନ ଲୋପ କରି ଦେବାପାଇଁ ମଧ୍ୟ

କଲ୍ପନା କରିଥିଲେ । ମୌଲବୀ ଅବଦୁଲ୍ଲା ନାମକ ଜଣେ ବ୍ୟକ୍ତି ଫତେହ୍ ମହମ୍ମଦ୍ ଓ ମହମ୍ମଦ୍ ଅଲ୍ଲି ନାମକ ଅନ୍ୟ ଦୁଇଜଣ ମୁସଲମାନ ଯୁବକଙ୍କ ସହଯୋଗରେ ଦେଶରେ ଆଭ୍ୟନ୍ତରୀଣ ବିଦ୍ରୋହ ଏବଂ ଆଫଗାନିସ୍ଥାନ ଦ୍ୱାରା ବାହ୍ୟ ଆକ୍ରମଣର ଯୋଜନା ମଧ୍ୟ ପ୍ରସ୍ତୁତ କରୁଥିଲେ । ମୌଲବୀଙ୍କ ବାସ ଗୃହରେ ଏ ବିଷୟରେ ଗୁପ୍ତ ଆଲୋଚନା-ସଭା ନିୟମିତ ଚାଲୁଥିଲା ଏବଂ ଆଫଗାନିସ୍ଥାନର ଲୋକେ ଭାରତ ସୀମା ପାର ହୋଇ ଏ ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ । ୧୯୧୪-୧୯୧୮ ମସିହା ମଧ୍ୟରେ ପ୍ରଥମ ବିଶ୍ୱଯୁଦ୍ଧ ଚାଲିଥିବା ବେଳେ ଏହି ଲୋକମାନେ ପଞ୍ଜାବର ଅନ୍ୟ ଏକ ବିଦ୍ରୋହୀ ଦଳ ସହିତ ମିଳିତ ହୋଇ କାର୍ଯ୍ୟ କରିବାକୁ ଲାଗିଲେ ।

୧୯୦୭-'୦୮ ମସିହାରେ ପଞ୍ଜାବର ବିଭିନ୍ନ ଅଞ୍ଚଳରେ ଏଠି ସେଠି ଉପଦ୍ରବ ଆରମ୍ଭ ହୋଇସାରିଥିଲା । ଏହି ନୂତନ ଆନ୍ଦୋଳନର ନେତା ଥିଲେ ଲାଲା ଲଜପତ ରାୟ ଏବଂ ସର୍ଦ୍ଦାର ଅଜିତ ସିଂହ । ଏମାନଙ୍କୁ ଗିରଫ କରି ୧୯୧୯ ମସିହାରେ ବଙ୍ଗଳା ଆଇନର ତିନିଦଫା ଅନୁସାରେ ଭାରତରୁ ବହିଷ୍କାର କରାଗଲା । ସର୍ଦ୍ଦାର ଭଗତ୍ ସିଂହ ଅଜିତ୍ ସିଂହଙ୍କର ପୁତୁରା ଥିଲେ । ସେହି ସମୟରେ ଲାଲା ହରଦୟାଲ୍ ଓ ଭାଇ ପରମାନନ୍ଦ ପଞ୍ଜାବୀ ଯୁବକମାନଙ୍କୁ ବଙ୍ଗଳାର ବିପ୍ଳବୀମାନଙ୍କ ଭଳି ଗଠନ କରିବାକୁ ଆରମ୍ଭ କରି ଦେଇଥିଲେ । ଲାଲା ହରଦୟାଲ ସେ ସମୟରେ ଭାରତୀୟ ବିପ୍ଳବୀମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ । ପଞ୍ଜାବ ବିଶ୍ୱବିଦ୍ୟାଳୟରେ ଜଣେ ଉଚ୍ଚକୋଟୀର ସ୍ନାତକ ହେଲାପରେ ଉଚ୍ଚଶିକ୍ଷା ପାଇଁ ତାଙ୍କୁ ସରକାରୀ ଛାତ୍ର-ବୃତ୍ତି ମିଳିଥିଲା ଏବଂ ଏହାଦ୍ୱାରା ସେ ଇଂଲଣ୍ଡ ଯାଇଥିଲେ । ମାତ୍ର କେତେ-ମାସ ପରେ ସେ ଭାରତ ଉପରେ ଇଂରେଜ ଶାସନକୁ ଅସହ୍ୟ ବୋଧ କଲେ । ସେହିଠାରେ ହିଁ ତାଙ୍କର ଉଚ୍ଚଶିକ୍ଷା ସମାପ୍ତ ହେଲା । ସରକାରୀ ଛାତ୍ର-ବୃତ୍ତିରେ ଜଳାଞ୍ଜଳୀ ଦେଇ ସେ ଜଣେ ଉଗ୍ର ବିପ୍ଳବୀ ଭାବରେ ଦେଶର ସ୍ୱାଧୀନତା-ସଂଗ୍ରାମ ନିମିତ୍ତ ନିଜ ଜୀବନକୁ ଉତ୍ସର୍ଗ କରିଦେଲେ । ଏହାପରେ ସେ ଆମେରିକା ଯାଇ ସେଠାରେ ବିପ୍ଳବର ଏକ କେନ୍ଦ୍ର ସ୍ଥାପନ କରିଥିଲେ । ବଙ୍ଗଳାର ତତ୍କାଳୀନ ପ୍ରସିଦ୍ଧ ବିପ୍ଳବୀ ପତ୍ରିକା 'ଯୁଗାନ୍ତର'ର ନାମାନୁସାରେ

ସେ ଏହି ବିପ୍ଳବୀ କେନ୍ଦ୍ରର ନାମ ରଖିଥିଲେ 'ଯୁଗାନ୍ତର ଆଶ୍ରମ' । ସେଠାରେ ସେ ମୋହନ ସିଂହ ଭକ୍ନା ତଥା ଅନ୍ୟ କେତେଜଣ ପ୍ରଖ୍ୟାତ ବିପ୍ଳବୀଙ୍କ ସହଯୋଗରେ ନିଜର ପ୍ରସିଦ୍ଧ 'ଗଦର୍' ପାର୍ଟି ଗଠନ କରିଥିଲେ । ସେଠାରୁ ସେ ନିଜର ପ୍ରତିନିଧିମାନଙ୍କୁ ପଞ୍ଜାବ ପଠାଇ ତାଙ୍କର ଜରିଆରେ ପଞ୍ଜାବର ଜନସାଧାରଣଙ୍କୁ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଉତ୍ସାହିତ କରିବାକୁ ଲାଗିଲେ । ଉର୍ଦ୍ଦୁ ଭାଷାରେ 'ଗଦର' ଶବ୍ଦର ଅର୍ଥ ହିଁ 'ବିଦ୍ରୋହ' ।

ଲାଲା ହରଦୟାଲଙ୍କର ପ୍ରଧାନ ଦୂତ ଥିଲେ ଲାଲ୍‌ଚାନ୍ଦ ଫଲକ୍ । ଲାଲ୍‌ଚାନ୍ଦ ଫଲକ୍ ଜଣେ ପ୍ରସିଦ୍ଧ ବିପ୍ଳବୀ କବି ଥିଲେ । ତାଙ୍କର ଉଗ୍ର ଦେଶାତ୍ମବୋଧ-କବିତା ମାଧ୍ୟମରେ ସେ ପଞ୍ଜାବର ପ୍ରତ୍ୟେକ ଜନସାଧାରଣଙ୍କ ପାଖକୁ ବିପ୍ଳବର ସନ୍ଦେଶ ଖୁବ୍ ସହଜରେ ନେଇ ପାରୁଥିଲେ । ତାଙ୍କର କବିତାଗୁଡ଼ିକ ଜନସାଧାରଣଙ୍କ ମନରେ ଏପରି ଉନ୍ମାଦନା ଆଣିଦେଲା ଯେ, ଶେଷରେ ଇଂରେଜ ସରକାର ବ୍ୟସ୍ତ ହୋଇ ଏହି ଯୁବ-କବିଙ୍କୁ ଜେଲ୍‌ରେ ପୂରାଇ ଦେଲେ । ଅନ୍ୟ ଜଣେ ଯୁବ-ଦେଶଭକ୍ତ ଥିଲେ ଭାଇ ପରମାନନ୍ଦ । ପଞ୍ଜାବରେ ବିପ୍ଳବର ବାର୍ତ୍ତା ପ୍ରଚାର କରିବାରେ ସେ ମଧ୍ୟ ଏକ ଉଲ୍ଲେଖ-ଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ସର୍ଦ୍ଦାର ଅଜିତ୍ ସିଂହଙ୍କୁ ଭାରତରୁ ବହିଷ୍କାର କରିବା ପରେ ତାଙ୍କ କାର୍ଯ୍ୟଭାର ତାଙ୍କ ଭାଇ ସର୍ଦ୍ଦାର କିଶନ୍ ସିଂହ ଗ୍ରହଣ କରିଥିଲେ । ସର୍ଦ୍ଦାର ଭଗତ୍ ସିଂହ ଏହି କିଶନ୍ ସିଂହଙ୍କର ଦ୍ୱିତୀୟ ପୁତ୍ର । ଲାଲା ହରଦୟାଲଙ୍କ ଭଳି ଭାଇ ପରମାନନ୍ଦ ମଧ୍ୟ ପଞ୍ଜାବ ବିଶ୍ୱବିଦ୍ୟାଳୟର ଜଣେ ଉଚ୍ଚକୋଟୀର ସ୍ନାତକ ଥିଲେ । କିଛିଦିନ ପାଇଁ ସେ ଉକ୍ତ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ପ୍ରାଧ୍ୟାପକ ଥିଲେ । କିନ୍ତୁ ତାଙ୍କର ବ୍ରିଟିଶ-ବିରୋଧୀ ପ୍ରଚାର ନିମିତ୍ତ ତାଙ୍କୁ କାରାରୁଦ୍ଧ କରାଯାଇଥିଲା । ତାଙ୍କ ସହିତ ସର୍ଦ୍ଦାର୍ କିଶନ୍ ସିଂହଙ୍କୁ ମଧ୍ୟ କାରାବରଣ କରିବାକୁ ପଡ଼ିଥିଲା ।

୧୯୧୨ ମସିହା ଡିସେମ୍ବର ୨୩ ତାରିଖ ଦିନ ତତ୍କାଳୀନ ବଡ଼ଲାଟ ଲର୍ଡ୍ ହାର୍ଡିଞ୍ଜ୍‌ଙ୍କ ଉପରକୁ ଯେଉଁ ବୋମା ନିକ୍ଷେପ କରାଯାଇଥିଲା, ତାହାର ଫଳ ସ୍ୱରୂପ ଇଂରେଜ ସରକାର ବିଶେଷ ଭାବରେ ସତର୍କତା ଅବଲମ୍ବନ

କରିବାକୁ ଲାଗିଲେ । ବଡ଼ଲାଟ୍ ଆଡ଼ମ୍ବରପୂର୍ଣ୍ଣ ପରିବେଶ ମଧ୍ୟରେ ହାତୀ ସିଂହାସନରେ ଉପବେଶନ କରିବାକୁ ଅଗ୍ରସର ହେବା ସମୟରେ ତାଙ୍କ ଉପରକୁ ବୋମା ଫିଙ୍ଗା ଯାଇଥିଲା । ଏ ଭୟଙ୍କର ଯୋଜନା ବିପ୍ଳବୀ ରାସବିହାରୀ ବୋଷଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା ଏବଂ ତାଙ୍କର ସହଯୋଗୀ-ମାନେ ଯୋଜନାଟିକୁ ଠିକ୍ ଭାବରେ କାର୍ଯ୍ୟକାରୀ କରିଥିଲେ । ଇଂରେଜ ସରକାର ଏ ଘଟଣାରେ ବିଶେଷ ଭାବରେ ବିବ୍ରତ ହୋଇ ପଡ଼ିଥିଲେ । ଏ ଭୀଷଣ କାଣ୍ଡ ଘଟାଇଥିବା ଲୋକମାନଙ୍କର କୌଣସି ପତ୍ତା ନ ମିଳିବାରୁ ଏହାର ଅନୁସନ୍ଧାନ ପାଇଁ ଇଂଲଣ୍ଡର ଗୁପ୍ତଚର ବିଭାଗକୁ ଅନୁରୋଧ କରାଗଲା । ଫଳରେ ବ୍ରିଟିଶ୍ ଗୁପ୍ତଚର ବିଭାଗ 'ସ୍କଟଲଣ୍ଡ ୟାର୍ଡ଼'ର ଚାରିଜଣ ମୁଖ୍ୟ ଗୋଇନ୍ଦା କର୍ମଚାରୀ ଭାରତରେ ଆସି ପହଞ୍ଚିଲେ । ଅଖିଳ ଭାରତୀୟ ସ୍ତରରେ ରାଜନୈତିକ ବିଦ୍ରୋହୀମାନଙ୍କ ଗତିବିଧି ଅନୁଧ୍ୟାନ କରିବା ପାଇଁ ଭାରତରେ ଏକ ସ୍ୱତନ୍ତ୍ର ଗୁପ୍ତଚର ବିଭାଗ ଖୋଲିବାର ଦାୟିତ୍ୱ ଏହି ଚାରିଜଣ ଇଂରେଜଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ଏ ଚାରିଜଣ ବ୍ୟକ୍ତି ହେଉଛନ୍ତି ସାର୍ ଚାର୍ଲସ୍ ଟେଗାର୍ଟ୍, କ୍ଳୀଭଲଣ୍ଡ, ଡେନ୍‌ହାମ୍ ଓ ଲେମେନ୍ । ଦୁଇବର୍ଷ ପରେ କ୍ଳୀଭଲଣ୍ଡ୍ ସାହେବ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ଟେଗାର୍ଟ ସାହେବ ବଙ୍ଗଳାର ବିଶେଷ ଗୁପ୍ତଚର ବିଭାଗରେ ମୁଖ୍ୟରୂପେ କାର୍ଯ୍ୟ କରିବାକୁ ଲାଗିଲେ । ବଙ୍ଗଳାର ବିପ୍ଳବୀମାନେ ତାଙ୍କୁ ହତ୍ୟା କରିବା ନିମିତ୍ତ ଚେଷ୍ଟା ଚଳାଇଲେ । ଗୋପୀମୋହନ ସାହା ନାମକ ବଙ୍ଗଳାର ଜଣେ ବିପ୍ଳବୀ ଯୁବକ ଭ୍ରମବଶତଃ ଟେଗାର୍ଟଙ୍କ ପରିବର୍ତ୍ତେ ଆର୍ଣ୍ଣେଷ୍ଟ୍ ଡ଼େ ନାମକ ଅନ୍ୟ ଜଣେ ଇଂରେଜଙ୍କୁ ଗୁଳିକରି ହତ୍ୟା କରିଥିଲେ । ଏଥିପାଇଁ ଗୋପୀ ମୋହନଙ୍କୁ ବିଚାରାଳୟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେଠାରେ ସେ ବିଚାରକଙ୍କ ସମ୍ମୁଖରେ ସ୍ପଷ୍ଟ ଭାବରେ କହିଥିଲେ, "ମୋ ଦେଶର ଜଣେ ଶତ୍ରୁକୁ ହତ୍ୟା କରିବାରେ ବିଫଳ ମନୋରଥ ହୋଇଥିବାରୁ ମୁଁ ବିଶେଷ ଦୁଃଖିତ । କିନ୍ତୁ କୌଣସି ନା କୌଣସି ଦେଶଭକ୍ତ ମୋର ଏ ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ଯେ ଦିନେ ସମ୍ପୂର୍ଣ୍ଣ କରିବେ, ଏଥିରେ ମୋର ଦୃଢ଼ ବିଶ୍ୱାସ ଅଛି ।" ବିଚାର ପରେ ଗୋପୀମୋହନ ସାହାଙ୍କୁ ୧୯୨୪ ମସିହା ମାର୍ଚ୍ଚ ମାସ ପ୍ରଥମ ଦିବସରେ ଫାଶୀଦଣ୍ଡ ଦିଆଗଲା । ଅଦାଲତରେ ଗୋପୀ ମୋହନଙ୍କ

ଯୁକ୍ତି ଏବଂ ବର୍ତ୍ତିକା ବହୁ ବ୍ୟକ୍ତିଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଅହିଂସା ନୀତି ଉପରେ ଦୃଢ଼ ଆସ୍ଥା ସ୍ଥାପନ କରିଥିବା ବହୁ ବ୍ୟକ୍ତି ଏହାପରେ ଇଂରେଜମାନଙ୍କ ବିରୁଦ୍ଧରେ ହିଂସାତ୍ମକ ଆନ୍ଦୋଳନରେ ଯୋଗ ଦେଇଥିଲେ । ପରେ ମହାତ୍ମା ଗାନ୍ଧୀ ଏଥିପାଇଁ ବିଶେଷ ଚିନ୍ତିତ ହୋଇ ପଡ଼ିଥିଲେ । ଶେଷରେ ଟେଗାର୍ଟ ସାହେବ ମଧ୍ୟ ଭାରତରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ସେ ଜଣେ ସୁଦକ୍ଷ ଗୁଇନ୍ଦା ଥିଲେ । ସେ ଅତିସୁନ୍ଦର ଭାବରେ ବାଙ୍ଗଲା ଭାଷା କହି ପାରୁଥିଲେ ଏବଂ ବଙ୍ଗଳା ଭାଷାରେ ଗୀତ ମଧ୍ୟ ବୋଲି ପାରୁଥିଲେ । ତାଙ୍କର ଅନ୍ୟ ଜଣେ ସହଯୋଗୀ ଲୋମେନ୍ ସାହେବ ୧୯୩୦ ମସିହା ଅଗଷ୍ଟ ମାସ ୨୯ ତାରିଖ ଦିନ ଢାକାର ବିପ୍ଳବୀମାନଙ୍କ ଦ୍ୱାରା ନିହତ ହେଲେ ।

ପଞ୍ଜାବ ଏବଂ ଦିଲ୍ଲୀର ଗୁପ୍ତଚର ବିଭାଗ ଦିଲ୍ଲୀ ବୋମାକାଣ୍ଡ ବିଷୟରେ ବହୁ ପରିଶ୍ରମ କରି ମଧ୍ୟ କୌଣସି ସନ୍ଧାନ ପାଇଲେ ନାହିଁ । କିନ୍ତୁ ବଙ୍ଗଳାର ଗୁପ୍ତଚର ବିଭାଗ ହଠାତ୍ କଲିକତା ଅଞ୍ଚଳରେ ଶଶାଙ୍କ ମୋହନ ହାଜରା ନାମକ ଜଣେ ଲୋକଙ୍କ ଘର ଅଗ୍ରୃନକ ଭାବରେ ଖାନତଲାସ କରି ଏ ସମ୍ବନ୍ଧରେ କେତେକ ତଥ୍ୟ ଜାଣିବାକୁ ପାଇଲେ । ଶଶାଙ୍କ ମୋହନଙ୍କୁ ପୂର୍ବରୁ ସନ୍ଦେହ କରା ଯାଉଥିଲା । ତାଙ୍କ ଘରୁ ବୋମାର କେତୋଟି ଖୋଲ ତଥା ଏହି ଖୋଲ ତିଆରି ହେଉଥିବା ଯନ୍ତ୍ରପାତି ମଧ୍ୟ ଜବତ୍ କରାଗଲା । ଏହି ଖୋଲଗୁଡ଼ିକୁ ପରୀକ୍ଷା କରାଗଲା ପରେ ଦେଖାଗଲା ଯେ, ଦିଲ୍ଲୀରେ ଲର୍ଡ ହାର୍ଡିଞ୍ଜ୍ଙ୍କ ଉପରକୁ ଫିଙ୍ଗାଯାଇ ଥିବା ବୋମାର ଖୋଲ ସହିତ ଏ ଗୁଡ଼ିକର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ଏହାପରେ ବ୍ରିଟିଶ ଗୁଇନ୍ଦା ବିଭାଗ ଆହୁରି ଜୋର୍ ସୋର୍ ଅନୁସନ୍ଧାନ ଚଳାଇଲେ । ଶେଷରେ ବଙ୍ଗଳାର ଗୁଇନ୍ଦା ପୁଲିସ୍ଙ୍କ ଦ୍ୱାରା ଦୁଇଜଣ ବ୍ୟକ୍ତିଙ୍କ ସନ୍ଧାନ ମିଳିଲା । ସେ ଦୁଇଜଣ ହେଉଛନ୍ତି ବାରାଣାସୀର ଜଣେ ବାଳକ ଶ୍ରୀ ହରଦ୍ମସ୍ୱ ବେନାର୍ଜୀ ଓ ଦିଲ୍ଲୀ ଅଞ୍ଚଳର ଆଉ ଜଣେ ଅନାମଧେୟ ବ୍ୟକ୍ତି । ଶଚୀନ୍ଦ୍ରନାଥ ସାନ୍ୟାଲ୍ ଏହି ହରଦ୍ମସ୍ୱ ବେନାର୍ଜୀଙ୍କ ମାଧ୍ୟମରେ ବଙ୍ଗଳାର ବିପ୍ଳବୀମାନଙ୍କ ସହିତ ସମ୍ପର୍କ ରଖିଥିଲେ । ଏ ଦୁଇଜଣଙ୍କୁ ବ୍ରିଟିଶ ପୁଲିସ୍ ଗିରଫ୍ କରିନେଲେ ।

ହରଣୁ୍ୟ ଦୃଢ଼ତାର ସହିତ ନୀରବ ରହିବାରୁ ଇଂରେଜ ସରକାର ବାରଣାସୀରେ ଥିବା ବିପ୍ଳବୀ ସଂଗଠନ ବିଷୟରେ ବିଶେଷ କିଛି ଜାଣି ପାରିନଥିଲେ ନାହିଁ । କିନ୍ତୁ ଦଲ୍ଲୀର ବ୍ୟକ୍ତି ଜଣକ ଅତିଶୟ ଦୁର୍ବଳମନା ଥିବାରୁ ଗୁଇନ୍ଦା ପୁଲିସ୍ ତାଙ୍କଠାରୁ ବହୁ ତଥ୍ୟ ସଂଗ୍ରହ କରି ପାରିଥିଲେ । ଏହି ତଥ୍ୟ ଉପରେ ଆଧାରକରି ପ୍ରସିଦ୍ଧ ଦିଲ୍ଲୀ ବୋମାକାଣ୍ଡ ଘଟଣା ଉପରେ ମୋକଦ୍ଦମା ଗ୍ଭଲିଲା । ମୋକଦ୍ଦମା ଗ୍ଭଲିଥିବା ସମୟରେ ବିପ୍ଳବୀ ଦଳର ମହାନ୍ ନେତା ରାସବିହାରୀ ବୋଷଙ୍କ ନାମ ପ୍ରକାଶିତ ହୋଇଗଲା । ରାସବିହାରୀଙ୍କୁ ଧରିବା ପାଇଁ ପୁଲିସ୍ ବିଭାଗ ବହୁ ଉଦ୍ୟମ ଚଳାଇଲେ । କିନ୍ତୁ କିଛି ଫଳ ହେଲା ନାହିଁ । ପୁଲିସ୍‌ର ଶତଚେଷ୍ଟା ବିଫଳ ହେଲା । ସମୟ ସମୟରେ ପୁଲିସ୍ କେବଳ ତାଙ୍କ ବିପ୍ଳବାତ୍ମକ ଗତିବିଧିର ସୂଚନା ପାଉଥିଲେ । ସରକାର ଶେଷରେ ତାଙ୍କୁ ଧରାଇ ଦେଇ ପାରିଲେ ଏକଲକ୍ଷ ଟଙ୍କା ପୁରସ୍କାର ଦେବେ ବୋଲି ଘୋଷଣା କଲେ । ତଥାପି ଶେଷ ପର୍ଯ୍ୟନ୍ତ ପୁଲିସ୍ ତାଙ୍କୁ ଗିରଫ କରିପାରିଲେ ନାହିଁ ।

ଦିଲ୍ଲୀ–ବୋମାକାଣ୍ଡର ଫଳ ସ୍ୱରୂପ ଗ୍ଭରିଜଣ ବିଶିଷ୍ଟ ବିପ୍ଳବୀ ବୀରଙ୍କୁ ୧୯୧୫ ମସିହା ମଇମାସ ୧୧ ତାରିଖ ଦିନ ଫାଶୀଦଣ୍ଡ ଦିଆ ଯାଇଥିଲା । ସେମାନେ ହେଲେ ଦିଲ୍ଲୀର ମାଷ୍ଟର ଅମୀର୍ ଚନ୍ଦ, ଲାହୋରର ଭାଇ ବାଲ୍‌ମୁକୁନ୍ଦ ଏବଂ ଶ୍ରୀ ଅବଧ ବିହାରୀ । ଏ ତିନିଜଣ ଯାକ ପଞ୍ଜାବ ବିଶ୍ୱବିଦ୍ୟାଳୟର ଉଚ୍ଚକୋଟୀର ସ୍ନାତକ ଥିଲେ । ଚତୁର୍ଥ ଜଣକ ଥିଲେ ବଙ୍ଗଳାର ଶ୍ରୀ ବସନ୍ତକୁମାର ବିଶ୍ୱାସ । ମାଷ୍ଟର ଅମୀରଚନ୍ଦ ନିଜ ସମ୍ପତ୍ତିର ବହୁଲାଂଶ ଶିକ୍ଷା ଓ ସାଂସ୍କୃତିକ କାର୍ଯ୍ୟର ଉନ୍ନତି ପାଇଁ ଦାନକରି ଦେଇଥିଲେ । ଭାଇ ବାଲ୍‌ମୁକୁନ୍ଦ ପଞ୍ଜାବର ପ୍ରସିଦ୍ଧ ଦାନବୀର ଓ ଶିକ୍ଷାବିତ୍ ଲାଲା ହଂସରାଜଙ୍କ ଜାମାତା ଥିଲେ । ଦିଲ୍ଲୀ ବୋମାକାଣ୍ଡରୁ ସ୍ପଷ୍ଟ ଜଣା ପଡ଼ିଥିଲା ଯେ, ସେ ସମୟରେ ପଞ୍ଜାବ, ଉତ୍ତରପ୍ରଦେଶ ଏବଂ ବଙ୍ଗଳାରେ ଶକ୍ତିଶାଳୀ ବିପ୍ଳବୀଦଳଗୁଡ଼ିକ ସକ୍ରିୟ ଥିଲେ । ଏ ଘଟଣାରେ ଯେଉଁ ଫାଶୀ-ଦଣ୍ଡ ଦିଆଗଲା ତାହା ଭାରତର ଶତଶତ ଯୁବକଙ୍କୁ ଦେଶର ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ କରିବାକୁ ମହାନ ଶିକ୍ଷା ଦେଇଥିଲା ବୋଲି କହିଲେ ଅତ୍ୟୁକ୍ତି

ହୋଇନାହିଁ । ସେ ସମୟରେ ସର୍ଦ୍ଦାର କରତାରସିଂହ ଜଣେ ସ୍କୁଲ ଛାତ୍ର ଥିଲେ । ତାଙ୍କ କୋମଳହୃଦୟ ତନ୍ତ୍ରୀରେ ଏ ଫାଶୀଦଣ୍ଡ ଯେଉଁ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା, ତାହାର ଝଙ୍କାର ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ଅମ୍ଲାନ ରହିଥିଲା ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଭୟଙ୍କର ଭାବରେ ଆରମ୍ଭ ହୋଇଗଲା । ଭାରତୀୟ ବିପ୍ଳବୀମାନେ ମଧ୍ୟ ରାସବିହାରୀ ବୋଷଙ୍କ ନେତୃତ୍ୱରେ ଉତ୍ତର ଭାରତରେ ପରସ୍ପର ସହିତ ସହଯୋଗ ରକ୍ଷାକରି କାର୍ଯ୍ୟକରି ଚାଲିଥିଲେ । ସେହି ସମୟରେ ଭାରତୀୟ ବିପ୍ଳବୀମାନଙ୍କ ସହିତ ସମ୍ପର୍କ ସ୍ଥାପିତ କରିବା ପାଇଁ ଆମେରିକାରେ ଥିବା ଭାରତୀୟ ବିପ୍ଳବୀମାନେ ଯେଉଁ କେତେକଜଣ ଦୂତଙ୍କୁ ଭାରତ ପଠାଇଥିଲେ, ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ବିଷ୍ଣୁ ଗଣେଶ ପିଙ୍ଗଲେ । ସେ ଆମେରିକାରେ ଜଣେ ଇଞ୍ଜିନିୟର୍ ଭାବରେ କାର୍ଯ୍ୟ କରୁଥିଲେ ।

ମହାଯୁଦ୍ଧ ଖୁବ୍ ଜୋର୍‌ସୋର୍ ଚାଲିଥିବା ସମୟରେ ପ୍ରଥମେ ଜର୍ମାନୀ ଉଲ୍ଲେଖନୀୟ ସଫଳତା ହାସଲ କରିବାକୁ ଲାଗିଲା । ଏଥିରେ ଆମେରିକାସ୍ଥ 'ଗଦର' ପାର୍ଟିର ବିପ୍ଳବୀ ସଦସ୍ୟମାନେ ବିଶେଷ ଆନନ୍ଦ ପ୍ରକାଶ କରିଥିଲେ । ଭାରତରେ ଆନ୍ଦୋଳନକୁ ସତେଜ ରଖିବା ପାଇଁ ସେମାନେ ମାରାତ୍ମକ ଅସ୍ତ୍ରଶସ୍ତ୍ରସହ ବହୁ ସଂଖ୍ୟାରେ ଭାରତ ଅଭିମୁଖେ ଆସିବାକୁ ଲାଗିଲେ । ଆମେରିକାରେ 'ଗଦର' ପାର୍ଟିର କାର୍ଯ୍ୟକଳାପ ବିଷୟରେ ଇଂରେଜ ସରକାର ସର୍ବଦା ସତର୍କତା ଅବଲମ୍ବନ କରୁଥିଲେ । ଫଳରେ ଭାରତରେ ପଦାର୍ପଣ କଲାମାତ୍ରେ 'ଗଦର' ପାର୍ଟିର ବହୁ ବିପ୍ଳବୀ ସଦସ୍ୟଙ୍କୁ ଇଂରେଜ ସରକାର ଗିରଫ କରି ପଞ୍ଜାବର ବନ୍ଦୀ ଶିବିରକୁ ପଠାଇଦେଲେ । ଯେଉଁମାନେ ଗିରଫଦାରୀରୁ ରକ୍ଷା ପାଇଗଲେ ସେମାନେ ପଞ୍ଜାବରେ ବିପ୍ଳବାତ୍ମକ କାର୍ଯ୍ୟକୁ ସଂଗଠିତ ଭାବରେ ଉତ୍ତେଜିତ କରିବାକୁ ଲାଗିଲେ । ବିପ୍ଳବୀମାନଙ୍କର ବିଶେଷ ଅନୁରୋଧକ୍ରମେ ରାସବିହାରୀ ବୋଷ୍ ସେମାନଙ୍କ ନେତୃତ୍ୱ ନେବାପାଇଁ ଲାହୋରରେ ଆସି ପହଞ୍ଚିଲେ । କିନ୍ତୁ ପଞ୍ଜାବରେ

ସେତେବେଳେ ବିପ୍ଳବୀମାନଙ୍କର କୌଣସି ସଂଗଠନ ବା ସୁନିର୍ଦ୍ଦିଷ୍ଟ ଯୋଜନା ନ ଥିବାରୁ ସେ ବିଶେଷ ଭାବରେ ମର୍ମାହତ ହେଲେ । ଇତିମଧ୍ୟରେ ସେ ଜାଣିବାକୁ ପାଇଲେ ଯେ, କେତେକ ଇଂରେଜ ଗୁପ୍ତଚର ବିପ୍ଳବୀମାନଙ୍କ ମଧ୍ୟରେ ପ୍ରବେଶ କରି ସେମାନଙ୍କର ସମସ୍ତ ତଥ୍ୟ ସରକାରଙ୍କୁ ଗୋପନରେ ଯୋଗାଇବାରେ ଲାଗିଛନ୍ତି ଏବଂ ବିପ୍ଳବୀମାନଙ୍କୁ ବଶ କରିବା ପାଇଁ ଉପାୟ ମଧ୍ୟ ବତାଉଛନ୍ତି ! ଅବଶ୍ୟ ବିପ୍ଳବୀମାନେ ଏଠି ସେଠି ସରକାରୀ ଖଜଣା ଲୁଟିବାକୁ ଲାଗିଲେ, ଇଂରେଜ ସୈନ୍ୟମାନଙ୍କଠାରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ ନେଲେ ଏବଂ କେତେକ ପୁଲିସ୍ କର୍ମଚାରୀଙ୍କୁ ମଧ୍ୟ ହତ୍ୟା କରିଥିଲେ । କିନ୍ତୁ ଇଂରେଜ ସରକାର ସେମାନଙ୍କ ଅସ୍ତ୍ରଶସ୍ତ୍ର ଜବତ୍ କରିନେବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଯୁକ୍ତିର ବଳିପଶୁ ସ୍ୱରୂପ ସାଗରର ଅପର-ପାର୍ଶ୍ୱକୁ ପଠାଇ ଦେଇଥିଲେ ।

କେବଳ ସିଙ୍ଗାପୁରରେ ବିପ୍ଳବୀମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରେ ସଫଳ ହୋଇଥିଲେ । ସେଠାରେ ୧୯୧୫ ମସିହା ଫେବୃଆରୀ ୧୮ ତାରିଖ ଦିନ ଭାରତୀୟ ବିପ୍ଳବୀମାନେ ଶିଖ ବାହିନୀଙ୍କ ସହଯୋଗରେ ଇଂରେଜ ସୈନ୍ୟମାନଙ୍କୁ ପରାଜିତ କରି ଭାରତର ସ୍ୱାଧୀନତା ଘୋଷଣା କରିଥିଲେ । ଲାହୋରରେ ଅବସ୍ଥାନ କରିଥିବା ରାସବିହାରୀ ବୋଷ୍‌ଙ୍କ ପକ୍ଷରେ ସେତେବେଳେ ନିରାପଦ ନ ଥିଲା । ତେଣୁ ସେ ସର୍ଦ୍ଦାର କିଶନ୍ ସିଂହଙ୍କର ଘରେ ଆଶ୍ରୟ ଗ୍ରହଣ କରିଥିଲେ । ଏହିପରି ଭାବରେ ରାସବିହାରୀ ବୋଷ୍ ନିଜର ସଂସ୍ଥାର ଅଙ୍ଗରକ୍ଷୀ ବିନାୟକ ରାଓ କାପ୍‌ଲେଙ୍କ ସହିତ ଆସି ଲାହୋରରେ ପହଞ୍ଚିଥିଲେ ।

ପଞ୍ଜାବର ବିପ୍ଳବୀମାନଙ୍କ ମଧ୍ୟରୁ ବହୁବ୍ୟକ୍ତି 'ଗଦର' ପାର୍ଟିର ନିଃସ୍ୱାର୍ଥପର ସଦସ୍ୟ ଥିଲେ । ସେମାନଙ୍କର ବୀରୋଚିତ କାର୍ଯ୍ୟ, ଶାନ୍ତ ବ୍ୟବହାର, ଆଦର୍ଶ ତ୍ୟାଗ-ମନୋଭାବ ଏବଂ ସର୍ବୋପରି ଅମ୍ଳାନ ବଦନରେ ମୃତ୍ୟୁ ବରଣ କରିବାର ନିର୍ଭୀକତା ସର୍ଦ୍ଦାର ଭଗତ୍ ସିଂହଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ବିଶେଷକରି ଯୁବକ କର୍ତ୍ତାର୍ ସିଂହ ଏବଂ ଭାଇ ପୀ.ଗ୍ରୀ ସିଂହଙ୍କ

ଫାଶୀ-ଦଣ୍ଡ ତାଙ୍କ ହୃଦୟରେ ଦେଶ ଭକ୍ତି, ତ୍ୟାଗ ଓ ପ୍ରାଣୋତ୍ସର୍ଗ କରିବାର ଏକ ନୂତନ ଭାବ ସୃଷ୍ଟି କରିଥିଲା । ହିନ୍ଦୁସ୍ଥାନ-ପ୍ରଜାତାନ୍ତ୍ରିକ-ସଙ୍ଘ ଏବଂ ହିନ୍ଦୁସ୍ଥାନ-ସମାଜବାଦୀ-ପ୍ରଜାତାନ୍ତ୍ରିକ ସେନା ସଂଗଠିତ ହେବା ପୂର୍ବରୁ 'ଗଦର୍' ଆନ୍ଦୋଳନ ଭାରତୀୟ ବିପ୍ଳବୀ ଯୁବକମାନଙ୍କୁ ବହୁତ ପ୍ରେରଣା ଯୋଗାଇଥିଲା । ସର୍ଦ୍ଦାର ଭଗତ୍ ସିଂହ ମଧ୍ୟ ଏହାଦ୍ୱାରା ବିଶେଷ ଭାବରେ ଅନୁପ୍ରାଣିତ ହୋଇଥିଲେ ।



## ବାଲ୍ୟଜୀବନ

ସର୍ଦ୍ଦାର୍ ଭଗତ୍ ସିଂହ ପଞ୍ଜାବ ରାଜ୍ୟ ଅନ୍ତର୍ଗତ ଲାୟାଲ୍‌ପୁର ଜିଲ୍ଲାର ଏକ ପ୍ରତିଷ୍ଠିତ ଶିଖ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପୂର୍ବ-ପୁରୁଷମାନେ ପଞ୍ଜାବର ପ୍ରସିଦ୍ଧ ଖାଲ୍‌ସା ସର୍ଦ୍ଦାର ଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏହି ଖାଲ୍‌ସା ସର୍ଦ୍ଦାରମାନେ ମହାରାଜା ରଣଜିତ୍ ସିଂହଙ୍କ ନେତୃତ୍ୱରେ ଏକତ୍ରିତ ହୋଇ ପଶ୍ଚିମରେ ମହାପରାକ୍ରମୀ ପଠାଣ ଓ ପୂର୍ବରେ ଅତ୍ୟାଚାରୀ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ଅଞ୍ଚଳର ଠିକ୍ ମଧ୍ୟ ସ୍ଥଳରେ ଏକ ଶିଖ ରାଜ୍ୟ ପ୍ରତିଷ୍ଠା କରି ପାରିଥିଲେ । ଏହି ଶିଖ ରାଜ୍ୟର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ପାଇଁ ସେମାନେ ଏ ରାଜ୍ୟର ଶାସକମାନଙ୍କୁ ନିଜର ରକ୍ତ ବିନିମୟରେ ସାହାଯ୍ୟ କରିଥିଲେ । ଯେଉଁଥିପାଇଁ ସେମାନେ ଉକ୍ତ ଶାସକମାନଙ୍କଠାରୁ ପୁରସ୍କାର ସ୍ୱରୂପ ପ୍ରଚୁର କୃଷୋପଯୋଗୀ ଜମି ପାଇଥିଲେ ।

ଭଗତ୍ ସିଂହଙ୍କ ପିତାମହ ସର୍ଦ୍ଦାର ଅର୍ଜ୍ଜୁନ ସିଂହ ଜଣେ ବଡ଼ ଜମିଦାର ଥିଲେ । ୧୯୩୧ ମସୀହାରେ ଲାହୋରରେ ଯେତେବେଳେ ଭଗତ୍ ସିଂହଙ୍କ

ଶରୁଦ୍ଧରେ ମୋକଦ୍ଦମା ଚାଲିଥିଲା, ସେତେବେଳେ ତାଙ୍କୁ ଅଶୀବର୍ଷ ବୟସ । ତଥାପି ସେ ଶକ୍ତିଶାଳୀ ଓ ସଚେତନ ଥିଲେ । ସେ ଭଗତ୍ ସିଂହଙ୍କ ମୋକଦ୍ଦମାର ସମସ୍ତ ଖବର ବୁଝିବା ସଙ୍ଗେ ସଙ୍ଗେ ଦେଶର ତତ୍କାଳୀନ ରାଜନୈତିକ ଅବସ୍ଥା ବିଷୟରେ ସମ୍ପୂର୍ଣ୍ଣ ଅବଗତ ଥିଲେ । ଇଂରେଜ ସରକାରଙ୍କ ପ୍ରତି ଅନୁରକ୍ତ ଥିବାରୁ ବାହାଦୁର ସିଂହ ଓ ଦଲ୍‌ବାଗ୍ ସିଂହ ପ୍ରଭୃତି ତାଙ୍କର ଅନ୍ୟ ଭାଇମାନଙ୍କୁ ନାନା ପୁରସ୍କାର ଓ ପଦବୀ ମିଳିଥିଲା । କିନ୍ତୁ ଅର୍ଜୁନ ସିଂହ ଭିନ୍ନ ମତାବଲମ୍ବୀ ଥିଲେ । ପରିଣାମ ଭୟାବହ ବୋଲି ଜାଣି ମଧ୍ୟ ସେ ଇଂରେଜ ସରକାରଙ୍କ ଆନୁଗତ୍ୟ ସ୍ୱୀକାର କରି ନ ଥିଲେ । ଭଗତ୍ ସିଂହଙ୍କ ପିତାମହୀ ଶ୍ରୀମତୀ ଜୟ କାଉର୍ ହିନ୍ଦୁ ପରିବାରର ଜଣେ ଆଦର୍ଶ ସ୍ୱାମୀସ୍ତ୍ରୀ ମହିଳା ଥିଲେ । ସେ ନିଜ ପୁତ୍ର ପୌତ୍ରାଦିଙ୍କ ଲାଳନ-ପାଳନ ଭାର ନିଜେ ହିଁ ଗ୍ରହଣ କରିଥିଲେ । ତାଙ୍କ ହୃଦୟରେ ଅଶେଷ ଧୈର୍ଯ୍ୟ ଓ ଅସୀମ ସାହସ ଥିଲା । ସେ ସମୟରେ ଭାରତୀୟ ଜାତୀୟ ଆନ୍ଦୋଳନର ଅନ୍ୟତମ ପୁରୋଧା ଓ କର୍ମୀ ସୁଫି ଅମ୍ବାପ୍ରସାଦ୍ ଭଗତ୍‌ସିଂହଙ୍କ ପରିବାର ସହିତ ସମ୍ପୃକ୍ତ ଥିଲେ । ସେ ସେତେବେଳେ ତାଙ୍କ ଘରକୁ ଅବାଧରେ ଯିବା ଆସିବା କରୁଥିଲେ । ଥରେ ଅମ୍ବାପ୍ରସାଦ ଅର୍ଜୁନସିଂହଙ୍କ ଘରେ ଥିବା ସମୟରେ ତାଙ୍କୁ ଗିରଫ କରିବା ପାଇଁ ପୁଲିସ୍ ଆସି ସେଠାରେ ପହଞ୍ଚିଲେ । ସୁଫି ସାହେବ ସେତେବେଳେ ଘର ଭିତରେ ଥା'ନ୍ତି । କିନ୍ତୁ ଶ୍ରୀମତୀ ଜୟ କାଉର୍ ବାହାରେ ପୁଲିସ୍‌ଙ୍କ ସହିତ ଏପରି ଯୁକ୍ତି କଲେ ଯେ, ସେମାନେ ଶୂନ୍ୟ ହସ୍ତରେ ଫେରି ଯିବାକୁ ବାଧ୍ୟ ହୋଇଥିଲେ । ଏହି ଘଟଣାରୁ ତାଙ୍କ ସାହସ ଓ ପ୍ରତ୍ୟୁତ୍ପନ୍ନମତିତାର ପରିଚୟ ମିଳେ ।

ସର୍ଦ୍ଦାର୍ ଅର୍ଜୁନ ସିଂହଙ୍କର ତିନିପୁତ୍ର ଥିଲେ । ସେମାନେ ହେଲେ ସର୍ଦ୍ଦାର କିଶନ୍ ସିଂହ, ସର୍ଦ୍ଦାର୍ ଅଜିତ ସିଂହ ଓ ସର୍ଦ୍ଦାର୍ ସ୍ୱର୍ଣ୍ଣ ସିଂହ । ଏହି ତିନିଭାଇଯାକ ଦେଶପ୍ରେମୀ ଥିଲେ । ଦେଶ-ମାତୃକାର ସେବାପାଇଁ ସେମାନେ ପଞ୍ଜାବରେ ସବିଶେଷ ବିଦିତ ଥିଲେ । ଦେଶସେବା ପାଇଁ ସେମାନେ ଅକାତରେ କାରାବରଣ କରିଛନ୍ତି ଏବଂ ଅମ୍ଳାନ ବଦନରେ ନିର୍ଯ୍ୟାତନ ଦୁଃଖ ସହ୍ୟ କରିଛନ୍ତି । ଦୁଃଖର କଷଟି ପଥରରେ ସେମାନଙ୍କ ଜୀବନର ଶୁଦ୍ଧତା

ପ୍ରସିଦ୍ଧ ହୋଇ ଯାଇଥିଲେ । ଏଥିରୁ ଅଛୁ ସର୍ଦ୍ଦାର୍ ଅଜିତ୍ ସିଂହ ତତ୍କାଳୀନ ଭାରତୀୟ ରାଜନୀତି କ୍ଷେତ୍ରରେ ପଞ୍ଜାବ କେଶରୀ ଲାଲା ଲଜପତ୍ ରାୟଙ୍କର ପଥପ୍ରଦର୍ଶକ ଥିଲେ । ମାତୃଭୂମିର ସେବା ପାଇଁ ଅଜିତ୍ ସିଂହ ହିଁ ଲଜପତ୍-ରାୟଙ୍କୁ ପ୍ରେରଣା ଯୋଗାଇ ଥିଲେ । ଏକ ଧନୀ ଘରର ସନ୍ତାନ ହୋଇଥିଲେ ମଧ୍ୟ ସର୍ଦ୍ଦାର ଅଜିତ୍ ସିଂହ ପଞ୍ଜାବରେ ସ୍ୱାଧୀନତା ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ନିମିତ୍ତ ଉପଯୁକ୍ତ ସଂଗଠନ କରିବା ଉଦ୍ଦେଶ୍ୟରେ ନିଜର ସମସ୍ତ ପ୍ରକାର ପାରିବାରିକ ସୁଖ ସ୍ୱାଚ୍ଛନ୍ଦ୍ୟକୁ ପଛରେ ପକାଇ ଦେଇଥିଲେ । ଏହି ସମୟରେ ଅର୍ଥାତ୍ ୧୯୦୫ ମସିହାରେ ଭାରତର ତତ୍କାଳୀନ ବଡ଼ଲାଟ୍ ଲର୍ଡ୍ କର୍ଜନ୍‌ଙ୍କ ବଙ୍ଗ-ଭଙ୍ଗ ନୀତି ସମଗ୍ର ବଙ୍ଗଳାରେ ଏକ ଅଭୂତପୂର୍ବ ଆନ୍ଦୋଳନ ସୃଷ୍ଟି କରିଥିଲା । ବଙ୍ଗ-ବିଭାଜନ ପ୍ରଶ୍ନକୁ ଭିତ୍ତି କରି ବଙ୍ଗଳାରେ ଲର୍ଡ କର୍ଜନ୍‌ଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ଯେଉଁ 'ବନ୍ଦେମାତରଂ' ବା 'ସ୍ୱଦେଶୀ' ଆନ୍ଦୋଳନ ସୃଷ୍ଟି ହୋଇଥିଲା, ତାର ପ୍ରତିଧ୍ୱନି ସୁଦୂର ପଞ୍ଜାବରେ ମଧ୍ୟ ଅଳ୍ପଦିନ ମଧ୍ୟରେ ଦେଖା ଦେଇଥିଲା । ସେଠାରେ ଲାଲା ଲଜପତ୍ ରାୟ, ସର୍ଦ୍ଦାର୍ ଅଜିତ୍ ସିଂହ ଏବଂ ଏମାନଙ୍କର ପରମ ବନ୍ଧୁ ସୁଫି ଅମ୍ବାପ୍ରସାଦ ସେମାନଙ୍କର ଜ୍ୱାଳାମୟୀ ଭାଷଣ ଦ୍ୱାରା ଇଂରେଜମାନଙ୍କ ବିରୁଦ୍ଧରେ ପ୍ରବଳ ଉତ୍ତେଜନା ସୃଷ୍ଟି କରିବାକୁ ଲାଗିଲେ । ଏହି ଆନ୍ଦୋଳନରେ ସର୍ଦ୍ଦାର ଭଗତ୍ ସିଂହଙ୍କ ପିତା ସର୍ଦ୍ଦାର କିଶନ୍ ସିଂହ ଏବଂ ତାଙ୍କର ଅନୁଜ ସର୍ଦ୍ଦାର ସ୍ୱର୍ଣ୍ଣ ସିଂହ ମଧ୍ୟ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସର୍ଦ୍ଦାର କିଶନ୍ ସିଂହ ଜଣେ ପ୍ରଭାବଶାଳୀ ବକ୍ତା ନ ଥିଲେ ମଧ୍ୟ ଭାରତୀୟ ଜାତୀୟ ଆନ୍ଦୋଳନରେ ତାଙ୍କର ଅବଦାନ କିଛି କମ୍ ନ ଥିଲା । ସର୍ଦ୍ଦାର୍ ଭଗତ୍ ସିଂହଙ୍କ ପିତା ଓ ଖୁଡ଼ୁତାମାନେ ତାଙ୍କ ପିତାମହଙ୍କ ଅନୁମତି ନେଇ ଜାତୀୟ ଆନ୍ଦୋଳନର ସୁପରିଚାଳନା ପାଇଁ ମୁକ୍ତହସ୍ତରେ ଅର୍ଥଦାନ କରୁଥିଲେ ।

ଆଧୁନିକ ଭାରତ ଇତିହାସରେ ଇଂରେଜ ଶାସକମାନେ ୧୯୦୭ ମସିହାରେ ପ୍ରଥମଥର ପାଇଁ ଆନ୍ଦୋଳନ ଦମନ କରିବା ଉଦ୍ଦେଶ୍ୟରେ ୧୮୧୮ ମସିହାରେ ପ୍ରଣୀତ ହୋଇଥିବା ଆଇନର ତୃତୀୟ ଧାରାକୁ ପ୍ରୟୋଗ

କରିଥିଲେ । ସେହିଦିନଠାରୁ ଭାରତରେ ବ୍ରିଟିଶ ସାମ୍ରାଜ୍ୟବାଦୀମାନେ ଏ ଆଇନ୍‌କୁ ଆନ୍ଦୋଳନ ଦମନ କରିବା ନିମିତ୍ତ ଏକ ଅସ୍ତ୍ରରୂପେ ବ୍ୟବହାର କରିବାକୁ ଲାଗିଲେ । ଏହି ଆଇନ୍ ବଳରେ ବିନା ପରୀକ୍ଷା ନିରୀକ୍ଷା ଓ ବିଚାରରେ ଯେ କୌଣସି ଆନ୍ଦୋଳନକାରୀଙ୍କୁ ନିରୁଦ୍ଧ କରାଯାଇ ପାରୁଥିଲା । ବଙ୍ଗବିଚ୍ଛେଦ ପରେ ପରେ ବଙ୍ଗଳା ଓ ପଞ୍ଜାବରେ ଜନ ଆନ୍ଦୋଳନ ଅଧିକ ହେବାରୁ ଏହି ଦୁଇଟି ସ୍ଥାନରେ ଉକ୍ତ ଆଇନ୍‌ଟିକୁ ବିଶେଷ ଭାବରେ ପ୍ରୟୋଗ କରାଗଲା । ଏହି ଆଇନ୍‌ଦ୍ୱାରା ଦଣ୍ଡିତ ହୋଇ ଯେଉଁ ନେତୃଗଣ ଭାରତୀୟ ଗୌରବାନ୍ୱିତ ହୋଇଛନ୍ତି ସେମାନଙ୍କ ମଧ୍ୟରେ ସର୍ଦ୍ଦାର ଅଜିତ୍ ସିଂହ ଏବଂ ଲାଲା ଲାଜପତ୍ ରାୟ ଅନ୍ୟତମ ଥିଲେ । ଅଜିତ୍ ସିଂହ ସୁଦୂର ବ୍ରହ୍ମଦେଶର ଅସ୍ୱାସ୍ଥ୍ୟକର ବାତାବରଣ ମଧ୍ୟରେ ବର୍ଷେ-କାଳ କାରାବରଣ କରି ପଞ୍ଜାବକୁ ଫେରିଥିଲେ । ସୁଫି ଅମ୍ବାପ୍ରସାଦଙ୍କ ପଛରେ ପୁଲିସ୍ ଲାଗିଥିବା ବିଷୟ ପୂର୍ବରୁ ଉଲ୍ଲେଖ କରାଯାଇଛି । ଦୁର୍ଦ୍ଦାନ୍ତ ବ୍ରିଟିଶ ପୁଲିସ୍ ହାତରୁ ନିଜକୁ ରକ୍ଷା କରିବା ପାଇଁ ଅମ୍ବାପ୍ରସାଦ ଭାରତ ସୀମା ଅତିକ୍ରମ କରି ପ୍ରଥମେ କାବୁଲ୍ ଏବଂ ପରେ ଇରାନ୍‌ରେ ପହଞ୍ଚିଲେ । ସେହି ସ୍ଥାନରୁ ହିଁ ସେ ଭାରତୀୟମାନଙ୍କୁ ଜାତୀୟ ଚେତନାର ବାଣୀ ଏବଂ ବିଦ୍ରୋହ ପାଇଁ ପ୍ରେରଣା ଯୋଗାଇବାରେ ଲାଗିଥିଲେ । ପଞ୍ଜାବରେ 'ଗଦର' ପାର୍ଟି ଯେତେବେଳେ ଇଂରେଜ ବିରୋଧୀ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଉଥିଲେ, ସେତେବେଳେ ସୁଫି ଅମ୍ବାପ୍ରସାଦ ଇରାନ୍ ସ୍ଥିତ ଭାରତୀୟ ସୈନିକମାନଙ୍କୁ ଏ ପ୍ରକାର ବିଦ୍ରୋହ ପାଇଁ ତାଲିମ୍ ଦେବାକୁ ଲାଗିଥିଲେ । ତାଙ୍କ କାର୍ଯ୍ୟକଳାପରେ ଇଂରେଜ ସରକାର କ୍ଷୁବ୍ଧ ହୋଇ ତାଙ୍କୁ କୌଶଳ ପୂର୍ବକ ଗିରଫ୍ କରିନେଲେ । ଏହାପରେ ସାମରିକ ଅଦାଲତରେ ତାଙ୍କର ବିଚାର ହୋଇ ରାଜଦ୍ରୋହ ଅପରାଧରେ ତାଙ୍କୁ ପ୍ରାଣଦଣ୍ଡ ଦିଆଗଲା । ସର୍ଦ୍ଦାର ଅଜିତ୍ ସିଂହ ଓ ଲାଜପତ୍ ରାୟଙ୍କୁ ଯେଉଁ ସ୍ଥାନକୁ ନିର୍ବାସନ ଦିଆଯାଇଥିଲା, ରାଜ ଦ୍ରୋହାତ୍ମକ ଭାଷଣ ପାଇଁ ସେଠାକୁ ସର୍ଦ୍ଦାର କିଶନ୍ ସିଂହ ଏବଂ ସର୍ଦ୍ଦାର ସ୍ୱର୍ଣ୍ଣ ସିଂହଙ୍କୁ ମଧ୍ୟ କାରାବରଣ ପାଇଁ ପରେ ପ୍ରେରଣ କରାଯାଇଥିଲା । ଏହିପରି ଦୀର୍ଘ ଅଠେଇଶ ବର୍ଷ ସଂଗ୍ରାମ ଓ ସଂଘର୍ଷମୟ ଜୀବନ କଟାଇବା ପରେ ସର୍ଦ୍ଦାର ଭଗତ୍ ସିଂହଙ୍କ ପିତା ଏବଂ ପିତୃବ୍ୟମାନେ

ପଞ୍ଜାବର ସେହି ଯୁଗାନ୍ତକାରୀ ଆନ୍ଦୋଳନରେ ଅଗ୍ରଣୀ ହେବାର ସମ୍ମାନ ଲାଭ କରିଥିଲେ ।

ଯେଉଁ ସମୟରେ ସର୍ଦ୍ଦାର ସ୍ୱର୍ଣ୍ଣ ସିଂହ କାରାଗାର ମଧ୍ୟରେ ମୃତ୍ୟୁବରଣ କଲେ, ଠିକ୍ ସେହି ସମୟରେ ୧୯୦୭ ମସିହା ଅକ୍ଟୋବର ମାସ ଶନିବାର ୨୮ ଉଷାକାଳରେ ସର୍ଦ୍ଦାର ଭଗତ୍ ସିଂହ ଈଶ୍ୱରଙ୍କର ଏକ ପ୍ରେରିତ ପୁରୁଷ ରୂପେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାଲ୍ୟକାଳ ସେପରି ଘଟଣାବହୁଳ ନ ଥିଲା । ବିଦ୍ୟାଳୟର ଗୃହ କାନ୍ଥ ମଧ୍ୟରେ ଆବଦ୍ଧ ରହି ବିଦ୍ୟା ଅଧ୍ୟୟନ କରିବା ଅପେକ୍ଷା କ୍ରୀଡ଼ାଙ୍ଗନରେ କ୍ରୀଡ଼ାରତ ରହିବାକୁ ସେ ଅଧିକ ପସନ୍ଦ କରୁଥିଲେ । ଲାୟଲପୁର ଜିଲାର ବଙ୍ଗା ନାମକ ଗ୍ରାମ ତାଙ୍କର ଜନ୍ମସ୍ଥଳୀ ଥିଲା । ସେ ସେଠାରେ ତାଙ୍କର ଅଗ୍ରଜ ଜଗତ୍ ସିଂହଙ୍କ ସହିତ ଏକ ପ୍ରାଥମିକ ବିଦ୍ୟାଳୟରେ ନିଜର ଛାତ୍ରଜୀବନ ଆରମ୍ଭ କରିଥିଲେ । ମାତ୍ର ଏଗାର ବର୍ଷ ବୟସରେ ଜଗତ୍ ସିଂହଙ୍କର ମୃତ୍ୟୁ ହେଲା । ଭାଇଙ୍କର ଅକାଳ ମୃତ୍ୟୁରେ ବାଳକ ଭଗତ୍ ସିଂହ ଅନ୍ତରରେ ଗଭୀର ବ୍ୟଥା ଅନୁଭବ କରିଥିଲେ । ଏହାପରେ ତାଙ୍କର ପିତା ସର୍ଦ୍ଦାର କିଶନ୍ ସିଂହ ଲାହୋର ନିକଟସ୍ଥ ନବାନ୍‌କୋଟ୍‌କୁ ଚାଲି ଆସିଲେ । ସେଠାରେ ତାଙ୍କର କିଛି ଜମିବାଡ଼ି ଥିଲା । ଏହା ମଧ୍ୟରେ ଭଗତ୍ ସିଂହ ପ୍ରାଥମିକ ଓ ନିମ୍ନ ମାଧ୍ୟମିକ ବିଦ୍ୟାଳୟମାନଙ୍କରେ ଶିକ୍ଷା ଶେଷ କରି ସାରିଥିଲେ । ତେଣୁ ବର୍ତ୍ତମାନ କୌଣସି ଏକ ହାଇସ୍କୁଲରେ ତାଙ୍କ ନାମ ଲେଖାଇବାର ଆବଶ୍ୟକତା ପଡ଼ିଲା । ନିଜର ସନ୍ତାନସନ୍ତତିମାନଙ୍କୁ ଖାଲସା ହାଇସ୍କୁଲରେ ପଢ଼ାଇବା ପାଇଁ ସେତେବେଳେ ସେଠାକାର ଶିଖ୍‌ମାନଙ୍କର ଏକ ସଉକ୍ ଥିଲା । କିନ୍ତୁ ଏ ସ୍କୁଲର ତତ୍ତ୍ୱାବଧାରକମାନେ ଇଂରେଜ ସରକାରଙ୍କ ପ୍ରତି ଅନୁରକ୍ତ ଥିବାରୁ ଭଗତ୍ ସିଂହଙ୍କ ପିତା ସେଠାରେ ପୁଅକୁ ପଢ଼ାଇବାକୁ ପସନ୍ଦ କଲେ ନାହିଁ । ସୁତରାଂ ଭଗତ୍ ସିଂହଙ୍କୁ ଲାହୋରରେ ଥିବା ଡ଼ି: ଏ: ଭି: ସ୍କୁଲରେ ଭର୍ତ୍ତି କରାଗଲା । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ସର୍ଦ୍ଦାର କିଶନ୍ ସିଂହ ଜଣେ ବିଶିଷ୍ଟ ଦେଶପ୍ରେମୀ ଥିଲେ । ଦେଶମାତୃକାର ସେବାପାଇଁ ସେ ନିଜେ ଜଣେ ଶିଖ୍ ହୋଇ ମଧ୍ୟ ଏକ ଶିଖ୍ ସଂସ୍ଥାଦ୍ୱାରା ପରିଚାଳିତ

ବିଦ୍ୟାଳୟରେ ନିଜ ପୁଅଙ୍କୁ ନ ପଢ଼ାଇ ଅନ୍ୟ ଏକ ଧର୍ମ ସଂସ୍ଥା (ଆର୍ଯ୍ୟ ସମାଜ ) ଦ୍ୱାରା ପରିଚାଳିତ ବିଦ୍ୟାଳୟରେ ତାର ନାମ ଲେଖାଇଥିଲେ । ଏହି ବିଦ୍ୟାଳୟରେ ହାଇସ୍କୁଲ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ସର୍ଦ୍ଦାର ଭଗତ୍ ସିଂହ ନ୍ୟାସ୍‌ନାଲ୍ କଲେଜରେ ଅଧ୍ୟୟନ କଲେ । ସେଠାରେ ଅଧ୍ୟୟନ କରିବା ସମୟରେ ସେ କାନ୍‌ପୁର୍‌ରେ ହେଉଥିବା କଂଗ୍ରେସ ଅଧିବେଶନ ଦେଖିବାକୁ ଯାଇଥିଲେ । କଲେଜରେ ସୁଖ୍‌ଦେବ୍ ଓ ଜୟପାଲ୍ ନାମକ ଅନ୍ୟ ଦୁଇଜଣ ବାଳକଙ୍କ ସହିତ ତାଙ୍କର ବନ୍ଧୁତା ବଢ଼ିବାକୁ ଲାଗିଲା ।

୧୯୧୪ ମସିହାରୁ ୧୯୧୯ ମସିହା ପର୍ଯ୍ୟନ୍ତ ପ୍ରଥମ ମହାଯୁଦ୍ଧର ଘନଘଟା ସମଗ୍ର ପୃଥିବୀକୁ ଆଚ୍ଛନ୍ନ କରିଥିଲା । ଏହି ଅଶାନ୍ତ ପରିବେଶ ମଧ୍ୟରେ ସର୍ଦ୍ଦାର ଭଗତ୍ ସିଂହ ନିଜ ପରିବାରବର୍ଗଙ୍କ ସହିତ ଲାହୋରରେ ରହୁଥିଲେ । ସେହି ସମୟରେ ସର୍ଦ୍ଦାର୍ କିଶନ୍ ସିଂହ 'ଗଦର' ପାର୍ଟିର ଜଣେ ସକ୍ରିୟ ସମର୍ଥକ ଥିଲେ ଏବଂ ଏହି କାରଣରୁ ବିପ୍ଳବୀ ରାସବିହାରୀ ବୋଷ୍‌ଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ସେ ଉକ୍ତ ପାର୍ଟିକୁ ଏକ ହଜାର ଟଙ୍କା ଦାନ କରିଥିଲେ ଏବଂ ଲାହୋର୍‌ରୁ ନିରାପଦରେ ବାହାରକୁ ପଳାୟନ କରିବାରେ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ ।

ଚଉଦ ବର୍ଷ ବୟସ ହେବା ପୂର୍ବରୁ ଭଗତ୍ ସିଂହ ପଞ୍ଜାବର ବହୁ ବ୍ରିଟିଶ୍-ବିରୋଧୀ ସଂଗଠନ ସହିତ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ୧୯୨୨ ମସିହାର ଅସହଯୋଗ ଆନ୍ଦୋଳନ ବିଫଳ ହେଲାପରେ ନିଜର ଲକ୍ଷ୍ୟ ହାସଲ ଉଦ୍ଦେଶ୍ୟରେ କେତେଜଣ ଉଗ୍ରପନ୍ଥୀ ଯୁବକ ଗାନ୍ଧୀଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଅହିଂସା ନୀତି ପରିବର୍ତ୍ତେ ଅନ୍ୟପନ୍ଥ ବାଛି ନେବାକୁ ସ୍ଥିର କଲେ । ଏହି ସମୟରେ ପଞ୍ଜାବରେ ଏକ ନୂଆ ଦଳ ସୃଷ୍ଟି ହେଲା । ଏହାର ପ୍ରସିଦ୍ଧି ଚାରିଆଡ଼େ ବ୍ୟାପିଗଲା । ଏହି ସଂଗଠନର ସଭ୍ୟମାନେ ଭାରତମାତାଙ୍କୁ ଦାସତ୍ୱ-ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ହିଂସାତ୍ମକ ଉପାୟ ଅବଲମ୍ବନ କରିବାକୁ ଦୃଢ଼ସଂକଳ୍ପ ହେଲେ । ସର୍ଦ୍ଦାର ଭଗତ୍ ସିଂହଙ୍କ ଯୁବକ

ହୃଦୟରେ ଏହି ସଙ୍ଗଠନର କାର୍ଯ୍ୟକଳାପ ଯଥେଷ୍ଟ ପ୍ରଭାବ ପକାଇଥିଲା । ସେ ଉକ୍ତ ସଂଗଠନର ଅଭିମୁଖ୍ୟ ଓ ଉଦ୍ଦେଶ୍ୟ ବିଷୟରେ ବହୁ ତଥ୍ୟପୂର୍ଣ୍ଣ ଲେଖା ପ୍ରକାଶ କରିଥିଲେ । ତାଙ୍କର ପିତା ସର୍ଦ୍ଦାର କିଶନ୍ ସିଂହ ମଧ୍ୟ ୧୯୧୦ ଓ ୧୯୧୫ ମସିହାର ଏତାଦୃଶ ବିଶିଷ୍ଟ ସଂଗଠନଗୁଡ଼ିକର ପୃଷ୍ଠପୋଷକତା କରିଥିଲେ । ସାର୍ ମାଇକେଲ ଓ ଡାୟାର୍ଙ୍କ ଲିଖିତ 'ଭାରତ ଯେପରି ମୁଁ ତାହା ଜାଣେ' ନାମକ ପୁସ୍ତକରେ ଏ ସମସ୍ତ ବିଷୟ ଉଲ୍ଲେଖ କରା ଯାଇଅଛି । ଏ ପୁସ୍ତକରେ ଲେଖକ ସ୍ପଷ୍ଟ ବର୍ଣ୍ଣନା କରିଛନ୍ତି ଯେ, ସର୍ଦ୍ଦାର କିଶନ୍ ସିଂହ ବ୍ରିଟିଶ-ବିରୋଧୀ ଆନ୍ଦୋଳନକାରୀମାନଙ୍କୁ ହଜାର ହଜାର ଟଙ୍କା ଅକାତରେ ଦାନ କରିଥିଲେ । ଏହି କାରଣରୁ ଭାରତରକ୍ଷା ଆଇନ୍ ବଳରେ ତାଙ୍କୁ ନଜରବନ୍ଦୀ କରି ରଖା ଯାଇଥିଲା । ଭଗତ୍ ସିଂହ ନିଜ ପିତାଙ୍କର ପଦାଙ୍କ ଅନୁସରଣ କରି କର୍ତ୍ତବ୍ୟ ପଥରେ ଅଗ୍ରସର ହେବାକୁ ଲାଗିଲେ ।

୧୯୨୩ ଓ ୧୯୨୪ ମସିହାରେ ଭାରତବର୍ଷକୁ ବିଦେଶୀମାନଙ୍କ କବଳରୁ ମୁକ୍ତ କରିବା ପାଇଁ ଉକ୍ତ ନୂତନ ସଂଗଠନ ମାଧ୍ୟମରେ ଇଂରେଜ ବିରୋଧୀ ଆନ୍ଦୋଳନ ପୂର୍ଣ୍ଣ ଉତ୍ସାହରେ ଆରମ୍ଭ ହୋଇଗଲା । କଲିକତାରେ ଶଚୀନ୍ ସାନ୍ୟାଲ୍, ଯୋଗେଶ ଚକ୍ରବର୍ତ୍ତୀ ଏବଂ ଜ୍ୟୋତିଷ ଘୋଷ ପ୍ରଭୃତି ନେତାମାନେ ଏକ ବୈଠକରେ ମିଳିତ ହୋଇ ଆନ୍ଦୋଳନ ପରିଚାଳନା କରିବାକୁ ଏକ ସୁଚିନ୍ତିତ ପନ୍ଥା ନିରୂପଣ କରିଥିଲେ । ସମଗ୍ର ଉତ୍ତର ଭାରତକୁ ନେଇ ଗୋଟିଏ ବିରାଟ ସଂଗଠନ କରିବାକୁ ସେମାନେ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ । ମୈନ୍‌ପୁରୀ-ଷଡ଼ଯନ୍ତ୍ରରେ ଲିପ୍ତ ଥାଇ ସେ ସମୟର ଜଣେ ଶ୍ରେଷ୍ଠ ଦେଶପ୍ରେମୀ ଶ୍ରୀ ରାମପ୍ରସାଦ ବିସ୍ମିଲ୍ ଫେରାର ହୋଇ ପଣ୍ଡିତ ଗେଁଦାଲାଲ୍ ଓ ଶଚୀନ୍ଦ୍ରନାଥ ସାନ୍ୟାଲ୍ଙ୍କ ସହିତ ମିଳିତ ହେଲେ । ରାମପ୍ରସାଦ ବିସ୍ମିଲ୍ ଜଣେ ଉଚ୍ଚକୋଟୀର କବି ମଧ୍ୟ ଥିଲେ । ଏହାଙ୍କ ରଚିତ ସଙ୍ଗୀତ ଏବଂ କବିତାଗୁଡ଼ିକ ସାଧାରଣତଃ ଦେଶାତ୍ମବୋଧକ ଓ ଗମ୍ଭୀର ଭାବୋଦ୍ଦୀପକ ଥିବାରୁ ଜନସାଧାରଣଙ୍କ ହୃଦୟରେ ସର୍ବଦା ମାତୃଭୂମି ପ୍ରତି ମମତା ଭାବ ସୃଷ୍ଟି କରୁଥିଲା । ଲାହୋର ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ହୋଇ

ସର୍ଦ୍ଦାର ଭଗତ୍ ସିଂହ ଏବଂ ତାଙ୍କର ସାଥୀମାନେ ଅଦାଲତରେ ରାମପ୍ରସାଦଙ୍କ କବିତା ଆବୃତ୍ତି କରୁଥିଲେ । ଏ କବିତା ସେ ସମୟରେ ଅତି ଲୋକପ୍ରିୟ ଥିଲା ଓ ଯୁବକମାନଙ୍କ ମନରେ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା ।

ବିପ୍ଳବୀ-ସଂଗଠନଗୁଡ଼ିକର ବିସ୍ତାର ପାଇଁ ଶଚୀନ୍ଦ୍ର ସାନ୍ୟାଲ୍ ଲାହୋର ଅଭିମୁଖେ ଅଗ୍ରସର ହେଲେ । ସେଠାରେ ସେ ୧୯୧୪-୧୯୧୫ ମସିହାରେ ସଂଘଟିତ ଆନ୍ଦୋଳନରେ ଯୋଗଦାନ କରିଥିବା ପ୍ରମୁଖା ବିପ୍ଳବୀ ମହିଳା ଶ୍ରୀମତୀ ପାର୍ବତୀ ଦେବୀଙ୍କ ସହିତ ସାକ୍ଷାତ କଲେ । ସେଠାରେ ଶ୍ରୀମତୀ ପାର୍ବତୀ ଦେବୀ ତାଙ୍କର ଅନୁଜ ଅଧ୍ୟାପକ ଜୟଚନ୍ଦ୍ର ବିଦ୍ୟାଲଙ୍କାରଙ୍କଠାରୁ ଶଚୀନ୍ଦ୍ର ସାନ୍ୟାଲଙ୍କ ପରିଚୟ ପାଇଲେ । ଜୟଚନ୍ଦ୍ର ବିଦ୍ୟାଲଙ୍କର ପ୍ରସ୍ତାବରେ ଶଚୀନ୍ଦ୍ର ସାନ୍ୟାଲ ଓ ତାଙ୍କର ଅନ୍ୟାନ୍ୟ ବିପ୍ଳବୀ ବନ୍ଧୁମାନଙ୍କ ସହ ସହଯୋଗ କରିଥିଲେ । ଭଗତ୍ ସିଂହ ଓ ଭଗବତୀଚରଣ ଅତି ପିଲା ଦିନରୁ ସାନ୍ୟାଲ୍ ବାବୁଙ୍କ ସହିତ ପରିଚିତ ଥିଲେ ଏବଂ ସେମାନଙ୍କ ଉପରେ ତାଙ୍କର ଯଥେଷ୍ଟ ପ୍ରଭାବ ପଡ଼ିଥିଲା । ସାନ୍ୟାଲ୍ ବାବୁଙ୍କ ଆଦେଶରେ ଘରଦ୍ୱାର ଛାଡ଼ି ସେମାନେ ଯେ କୌଣସି ଜାଗାକୁ ଯିବା ପାଇଁ ପ୍ରସ୍ତୁତ ଥିଲେ । ସାନ୍ୟାଲ୍ ବାବୁ ସର୍ଦ୍ଦାର ଭଗତ୍ ସିଂହଙ୍କୁ କାନପୁର ପଠାଇ ଦେଇଥିଲେ, କାରଣ ସେଠାରେ ତାଙ୍କର ବଙ୍ଗଳାର 'ଅନୁଶୀଳନ' ପାର୍ଟି ତରଫରୁ କାର୍ଯ୍ୟ କରିବା ପାଇଁ ଉତ୍ତର ପ୍ରଦେଶକୁ ଆସିଥିବା ଯୋଗେଶଚନ୍ଦ୍ର ଚାଟାର୍ଜୀଙ୍କଠାରୁ ବିପ୍ଳବ ସମ୍ବନ୍ଧରେ ତାଲିମ୍ ପାଇବାର ଥିଲା ।

ଭଗତ୍ ସିଂହ ଯେତେବେଳେ କାନ୍‌ପୁରରେ ପହଞ୍ଚିଲେ ସେତେବେଳେ ତାଙ୍କୁ 'ପ୍ରତାପ' ପ୍ରେସ୍‌ରେ କାର୍ଯ୍ୟରେ ଲଗାଇ ଦିଆଗଲା । ଏହି ପ୍ରେସ୍‌ର ସମ୍ପାଦକ ଓ ସଂସ୍ଥାପକ ଥିଲେ ଶ୍ରୀ ଗଣେଶ ଶଙ୍କର ବିଦ୍ୟାର୍ଥୀ । ସେ ତତ୍କାଳୀନ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଚାଲିଥିବା ସାମ୍ପ୍ରଦାୟିକ ଗଣ୍ଡଗୋଳର ଅବସାନ ଘଟାଇବା ପାଇଁ ପ୍ରାଣୋତ୍ସର୍ଗ କରି ଥିଲେ । ସେ ଶଚୀନ୍ଦ୍ର ସାନ୍ୟାଲ୍‌ଙ୍କର ବ୍ୟକ୍ତିଗତ ବନ୍ଧୁ ଥିଲେ । ଏତଦନ

ମଧ୍ୟରେ ସର୍ଦ୍ଦାର ଭଗତ୍ ସିଂହ ମଧ୍ୟ ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କର ଘନିଷ୍ଠ ବନ୍ଧୁ ହୋଇଗଲେ । ଲାହୋର୍-ଷଡ଼ଯନ୍ତ୍ର ମାମଲାରେ ଜେଲଦଣ୍ଡ ଭୋଗ କରୁଥିବା ସବୁ ବିପ୍ଳବୀ ଅନଶନ କରିଥିଲେ । ଏହି ବନ୍ଦୀମାନଙ୍କ ସହିତ ସାକ୍ଷାତ କରିବା ପାଇଁ ବିଦ୍ୟାର୍ଥୀ ବାବୁ ସର୍ଦ୍ଦାର ଭଗତ୍ ସିଂହଙ୍କ ସହିତ ସେଠାକୁ ଯାଇଥିଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଉଭୟଙ୍କ ମଧ୍ୟରେ ଥିବା ଘନିଷ୍ଠତା ବିଷୟ ବାହାରକୁ ପ୍ରକାଶ କରାଯାଇ ନ ଥିଲା । ସର୍ଦ୍ଦାର ଭଗତ୍ ସିଂହ 'ପ୍ରତାପ' ପ୍ରେସ୍‌ରେ ନିୟମିତ ବିପ୍ଳବାତ୍ମକ ଲେଖାମାନ ଲେଖୁଥିଲେ ।

କାନ୍‌ପୁରରେ ହିଁ ସର୍ଦ୍ଦାର ଭଗତ୍ ସିଂହଙ୍କ ବିପ୍ଳବୀ-ଜୀବନର ଆରମ୍ଭ ହୋଇଥିଲା । ଏହି ସମୟରେ ସେ ଭାରତର ଏକ ସୁସଂଗଠିତ ବିପ୍ଳବୀ ଦଳ ସହିତ ଅତି ଘନିଷ୍ଠ ଭାବରେ ଜଡ଼ିତ ହୋଇ ପଡ଼ିଲେ । ଏହାପରେ ହିଁ ତାଙ୍କର ସାରା ଜୀବନ ବ୍ରିଟିଶ-ବିରୋଧୀ ବିପ୍ଳବର ଏକ ଅଙ୍ଗ ବିଶେଷ ହୋଇ ରହିଲା । ଏ ପ୍ରକାର ଯେଉଁ ବିପ୍ଳବୀ-ସଂଗଠନର ପରିଚାଳନା ପାଇଁ ସର୍ଦ୍ଦାର ଭଗତ୍ ସିଂହ ଆପଣାର ମନପ୍ରାଣ ଢାଳି ଦେଇଥିଲେ ସେ ସଂଗଠନ ବିଷୟରେ କିଞ୍ଚିତ୍ ଆଲୋକପାତ କରିବା ଏକାନ୍ତ ବିଧେୟ ।



## ବିପ୍ଳବୀ ଜୀବନର ଆରମ୍ଭ

୧୯୧୦ ମସିହା ପର୍ଯ୍ୟନ୍ତ ଭାରତରେ ଯେଉଁ ବିପ୍ଳବୀ-ସଙ୍ଗଠନମାନ ଥିଲା ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ବଙ୍ଗଳାରେହିଁ କାର୍ଯ୍ୟ କରୁଥିଲା । ପ୍ରଥମ ବିଶ୍ୱଯୁଦ୍ଧ ଶେଷ ହେଲା ପରେ ଅର୍ଥାତ୍ ୧୯୧୯ ମସିହା ଶେଷ ଭାଗରେ ଭାରତରେ ଥିବା ଶ୍ରେଷ୍ଠ ଶ୍ରେଷ୍ଠ ବହୁ ବିପ୍ଳବୀ ସଙ୍ଗଠନରୁ ଏହା ବେଶ ପ୍ରତୀୟମାନ ହେଉଥିଲା ଯେ, ଭାରତର ସବୁ ଅଞ୍ଚଳରେ ବିଦ୍ରୋହର ପତାକା ।

ଉଡ଼ିବାପାଇଁ ଅନୁକୂଳ କ୍ଷେତ୍ର ପ୍ରସ୍ତୁତ ହୋଇ ସାରିଥିଲା । ଏହି ଉଦ୍ଦେଶ୍ୟରେ ବିପ୍ଳବୀ ରାସବିହାରୀ ବୋଷ୍, ଯତୀନ ମୁଖାର୍ଜୀ, ପ୍ରଫୁଲ୍ଲ ଗାଙ୍ଗୁଲି, ଶଚୀନ୍ଦ୍ର-ସାନ୍ୟାଲ୍, ବିଷ୍ଣୁ ଗଣେଶ ପିଙ୍ଗଲେ, ସର୍ଦ୍ଦାର କର୍ତ୍ତାର୍ ସିଂହ, ଠାକୁର୍ ପୃଥ୍ୱୀ-ସିଂହ ଓ ବାବା ମୋହନ୍ ସିଂହ ଭକନା ପ୍ରଭୃତି ଦେଶସେବୀମାନେ ଏକତ୍ରିତ ହୋଇଥିଲେ । ବିପ୍ଳବକୁ ତ୍ୱରାନ୍ୱିତ କରିବା ଏବଂ କେତେକ ରାଜପୁତ ଓ ଶିଖ୍ ସୈନ୍ୟମାନଙ୍କ ସହାୟତାରେ ଭାରତରେ ଏକ ବ୍ୟାପକ ସାମରିକ ବିଦ୍ରୋହ କରିବା ନିମିତ୍ତ ସେମାନେ ଏକ ବିସ୍ତୃତ ଯୋଜନା ପ୍ରସ୍ତୁତ କରିଥିଲେ । ରାଜସ୍ଥାନରେ ରାଓ ଗୋପାଲ୍ ସିଂହ ଏଥିପାଇଁ ଅନେକ ରାଜପୁତ ସୈନ୍ୟଙ୍କୁ ଏକତ୍ରିତ କରି ତାଙ୍କୁ ପରିକଳ୍ପିତ ବିଦ୍ରୋହ ପାଇଁ ଅଶ୍ୱ ଏବଂ ଅସ୍ତ୍ରଶସ୍ତ୍ର ଯୋଗାଇଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର ଥିଲା । ଅନ୍ତର୍ଘାତ ଯୋଗୁ ସେମାନଙ୍କର ସମସ୍ତ ଯୋଜନା ପଣ୍ଡ ହୋଇଗଲା କେବଳ ଭାରତ ବାହାରେ ଥିବା ସିଙ୍ଗାପୁରରେ ସେମାନଙ୍କର ଉଦ୍ୟମ ଆଶାତୀତ ଭାବରେ ସଫଳ ହୋଇଥିଲା । ସେଠାରେ ଭାରତୀୟ ବିପ୍ଳବୀ ସୈନ୍ୟମାନେ ପଣ୍ଡିତ ପରମାନନ୍ଦଙ୍କ ନେତୃତ୍ୱରେ ସମ୍ପୂର୍ଣ୍ଣ ଆଧିପତ୍ୟ ବିସ୍ତାର କରି ସାତଦିନ ପର୍ଯ୍ୟନ୍ତ ସ୍ୱାଧୀନତାର ବିଜୟ-ପତାକା ଉଡ଼ାଇ ପାରିଥିଲେ । ଶେଷରେ ଯେତେବେଳେ ଜାପାନୀ ଯୁଦ୍ଧଜାହାଜ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସେଠାରେ ଆସି ପହଞ୍ଚିଲା, ସେତେବେଳେ ଏ ବିଦ୍ରୋହୀ ସୈନିକ ମାନଙ୍କୁ ଅଧୀନସ୍ତ କରାଯାଇ ପାରିଥିଲା । ଗୋରା ସୈନ୍ୟମାନଙ୍କ କବଳରେ ପଡ଼ିଲା ପରେ ବିଦ୍ରୋହୀ ଭାରତୀୟ ସୈନ୍ୟମାନଙ୍କୁ ସୁଦୂର ଫରାସୀ ରଣକ୍ଷେତ୍ରକୁ ପଠାଇ ଦିଆଯାଇଥିଲା । ଫ୍ରାନ୍ସରେ ସେତେ-ବେଳେ ଘମାଘୋଟ ଯୁଦ୍ଧ ଚାଲିଥିଲା । ଏମାନଙ୍କ ମଧ୍ୟରୁ ଅଧିକାଂଶ ସେଠାରେ ପ୍ରାଣ ହରାଇଲେ ।

ବିଦ୍ରୋହୀ ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଯାଇଥିଲା । ବିଷ୍ଣୁ ଗଣେଶ ପିଙ୍ଗଲେ ନାମକ ଜଣେ ଭାରତୀୟ ବିଦ୍ରୋହୀଙ୍କ ପାଖରୁ ବଙ୍ଗଳାରେ ନିର୍ମିତ ଏକ ମାରାତ୍ମକ ବୋମାବାହାରିବାରୁ ତାଙ୍କୁ ତାଙ୍କ ସୈନ୍ୟ ବାହିନୀ ସହ ମିରଟ୍‌ଠାରେ ଗିରଫ୍ କରାଯାଇଥିଲା । ପୂର୍ବୋକ୍ତ

ଶଚୀନ୍ଦ୍ର ସାନ୍ୟାଲ୍ ଏ ବୋମାଟିକୁ ବଙ୍ଗଳାର ଚନ୍ଦ୍ରନଗରଠାରୁ ବାରଣାସୀ ନେଇ ଆସିଥିଲେ । ସେଠାରୁ ବିନାୟକ ରାଓ କାପ୍‌ଲେ ଏହାକୁ ମିରଟ୍ ନେଇ ଯାଇଥିଲେ । ବିଷ୍ଣୁଗଣେଶ ପିଙ୍ଗଳେଙ୍କୁ ତତ୍‌କ୍ଷଣାତ୍ ଫାଶୀଦଣ୍ଡ ଦିଆଗଲା ଏବଂ ଅନ୍ୟ ଭାରତୀୟ ସୈନ୍ୟମାନଙ୍କୁ ଫାଶୀଦଣ୍ଡ ଦେଲା ପରେ ସେମାନଙ୍କର ଶବଗୁଡ଼ିକୁ ରାସ୍ତାକଡ଼ରେ ଥିବା ବୃକ୍ଷମାନଙ୍କରେ ଝୁଲାଇ ଦିଆଗଲା । ଭାରତୀୟ ବିଦ୍ରୋହୀ ମାନଙ୍କ ମନରେ ଘୋର ଆଶଙ୍କା ସୃଷ୍ଟି କରିବାପାଇଁ ଇଂରେଜ ସରକାର ଏ ପ୍ରକାର ଜଘନ୍ୟ ନୀତି ଅବଲମ୍ବନ କରିଥିଲେ । ଇଂରେଜ ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଭାରତୀୟ ସୈନିକମାନଙ୍କୁ ଶବ ଟଙ୍ଗାଯାଇଥିବା ବୃକ୍ଷ ଦେଇ ଇଚ୍ଛାକୃତ ଭାବରେ ନିଆଯାଇଥିଲା । ଏହି ଭାରତୀୟ ସୈନିକମାନଙ୍କୁ ବିଦ୍ରୋହର ଭୀଷଣ ପରିଣତି ବିଷୟରେ ଚେତାବନୀ ଦେବା ପାଇଁ ସମ୍ଭବତଃ ଏ ପନ୍ଥା ଅବଲମ୍ବନ କରି ଯାଇଥିଲା । ଫୈଜାବାଦ୍ ପ୍ରଭୃତି ଅନ୍ୟାନ୍ୟ କେଣ୍ଟୋନମେଣ୍ଟ୍‌ଗୁଡ଼ିକରେ ମଧ୍ୟ ଭାରତୀୟ ସୈନ୍ୟମାନଙ୍କୁ ଏ ପ୍ରକାର ଜଘନ୍ୟ ଉପାୟରେ ହତ୍ୟା କରି-ଯାଇଥିଲା ।

ସମଗ୍ର ଦେଶରେ ତତ୍‌କ୍ଷଣାତ୍ ଭାରତ-ରକ୍ଷା ଆଇନ୍ ଘୋଷଣା କରାଗଲା । ଏ ଆଇନ୍ ବଳରେ ପଞ୍ଜାବ, ଉତ୍ତର ପ୍ରଦେଶ, ବିହାର ଏବଂ ବଙ୍ଗ ଦେଶରେ ଅନେକ ଲୋକଙ୍କୁ ଗିରଫ୍ କରାଗଲା । ଦେଶର ବିଭିନ୍ନ ସ୍ଥାନରେ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ରାଜନୈତିକ-ମାମଲା ଦାଏର୍ କରାଗଲା ଏବଂ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଫାଶୀଦଣ୍ଡ ଓ ଅଧିକାଂଶଙ୍କୁ ଆଣ୍ଡାମାନ୍ ଦ୍ୱୀପପୁଞ୍ଜର ଅତି ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଯାବଜ୍ଜୀବନ କାରାଦଣ୍ଡ ଭୋଗ କରିବାକୁ ପଠାଇ ଦିଆଗଲା । ୧୯୧୭-୧୮ ମସିହା ମଧ୍ୟରେ ବିପ୍ଳବୀ ସଂଗଠନଗୁଡ଼ିକୁ ଦମନ କରାଯାଇଥିଲେ ମଧ୍ୟ ସେମାନଙ୍କୁ ସମ୍ପୂର୍ଣ୍ଣ ନିର୍ମୂଳ କରାଯାଇ ପାରିଲା ନାହିଁ ।

ଭାରତ ଇତିହାସର ଏହି ଯୁଗସନ୍ଧି ମୁହୂର୍ତ୍ତରେ ଭାରତୀୟ ରାଜନୀତି ଚିତ୍ରପଟରେ ମହାତ୍ମା ଗାନ୍ଧୀଙ୍କର ଆବିର୍ଭାବ ହେଲା । ତାଙ୍କର ନୂତନ ବାର୍ତ୍ତାକୁ

ଭାରତୀୟ ଯୁବକମାନଙ୍କୁ ନୂତନ ଭାବରେ ପ୍ରଭାବିତ କରିବାକୁ ଲାଗିଲା । ଏହାଙ୍କର ଆଦର୍ଶବାଦ ଏବଂ ତ୍ୟାଗ-ପୂତମନ ଭାରତୀୟ ଯୁବକମାନଙ୍କୁ କ୍ରମଶଃ ଆକୃଷ୍ଟ କରି ସେମାନଙ୍କୁ ଏକ ନୂତନ ଢଙ୍ଗରେ ପରିଚାଳିତ କରିବାକୁ ଲାଗିଲା । ଫଳତଃ ବହୁ ସଂଖ୍ୟକ ଯୁବକ ତାଙ୍କ ଦ୍ୱାରା ପରିଚାଳିତ ହୋଇ ଅସହଯୋଗ-ଆନ୍ଦୋଳନରେ ଯୋଗ ଦେବାକୁ ଆଗେଇ ଆସିଲେ । କିନ୍ତୁ କେତେକ ଉଚ୍ଛୃଙ୍ଖଳ ଯୁବକ ୧୯୨୨ ମସିହା ଫେବୃୟାରୀ ୫ ତାରିଖ ଦିନ ଗୋରଖ-ପୁର ଜିଲାର ଚୌରି ଚୌରା ନାମକ ସ୍ଥାନରେ ପୁଲିସ୍ ଅତ୍ୟାଚାରର ପ୍ରତିଶୋଧ ନେବାପାଇଁ ୨୨ଜଣ ପୁଲିସ କର୍ମଚାରୀଙ୍କୁ ହତ୍ୟା କରିଥିଲେ । ଫଳରେ ଗାନ୍ଧୀଜୀ ତାଙ୍କର ଭୁଲ ସ୍ୱୀକାର କରି ଏହି ଦେଶବ୍ୟାପୀ ଅସହ-ଯୋଗ- ଆନ୍ଦୋଳନକୁ ତତ୍କ୍ଷଣାତ୍ ସ୍ଥଗିତ ରଖିବାକୁ ଆହ୍ୱାନ ଦେଲେ । ଆଇନ୍ ଅମାନ୍ୟ ଆନ୍ଦୋଳନ ବନ୍ଦ ରଖି ଗଠନ ମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିବାପାଇଁ ସେ ଦେଶବାସୀଙ୍କୁ ଉପଦେଶ ଦେଲେ । ଯେଉଁ ପ୍ରସ୍ତାବ ଦ୍ୱାରା ଗାନ୍ଧୀଜୀ ଦେଶବାସୀଙ୍କୁ ଏ ପ୍ରକାର ଆହ୍ୱାନ ଦେଇଥିଲେ ତାହା ବିଖ୍ୟାତ 'ବରଦୋଲୀ ପ୍ରସ୍ତାବ' ନାମରେ ପରିଚିତ । ଇଂରେଜ ସରକାର ଏ ଘଟଣା ପରେ ମାର୍ଚ୍ଚ ୧୦ ତାରିଖ ଦିନ ଗାନ୍ଧୀଜୀଙ୍କୁ ଗିରଫ୍ କରିନେଲେ । ତାଙ୍କ ବିରୁଦ୍ଧରେ ତିନୋଟି ରାଜଦ୍ରୋହ-ଅପରାଧ ଉପସ୍ଥାପିତ କରାଯାଇ ପ୍ରତ୍ୟେକ ଅପରାଧ ପାଇଁ ଦୁଇବର୍ଷ ହିସାବରେ ତାଙ୍କୁ ମୋଟ ଛ' ବର୍ଷ କାରାଦଣ୍ଡ ଆଦେଶ ଦିଆଗଲା । ଗାନ୍ଧୀଜୀ ହଠାତ୍ ଆନ୍ଦୋଳନ ବନ୍ଦ କରିବାକୁ ଆହ୍ୱାନ ଦେବାରୁ ବିପ୍ଳବୀମାନେ ଏହାକୁ 'ବରଦୋଲୀ ପଛକୁ ହଟିଯା' ବୋଲି କହିବାକୁ ଲାଗିଲେ । ଆନ୍ଦୋଳନକୁ ହଠାତ୍ ସ୍ଥଗିତ ରଖିବା ଦ୍ୱାରା ଦେଶରେ ଘୋର ନିରାଶାର ଛାଇ ମାଡ଼ିଗଲା । କିନ୍ତୁ ବିପ୍ଳବୀମାନେ ଏଥିରେ ଆନନ୍ଦ ଅନୁଭବ କଲେ । ଗାନ୍ଧୀଜୀଙ୍କର ନୀରବତା ସେମାନଙ୍କୁ ଅଧିକ ପ୍ରେରଣା ଯୋଗାଇଲା । ତେଣୁ ସେମାନେ ନୂତନ ଉତ୍ସାହରେ ମାତି ବିପ୍ଳବାତ୍ମକ କାର୍ଯ୍ୟ ଆରମ୍ଭ କରିଦେଲେ । ୧୯୨୪ ମସିହାରେ କୌଣସି ଏକ ନୂଆ ବିପ୍ଳବ-ଅନୁଷ୍ଠାନ ପ୍ରତିଷ୍ଠିତ ହେଲା । ବଙ୍ଗ ଦେଶର ପରମ୍ପରା ଅନୁସାରେ ପୁରୁଣା ବିପ୍ଳବୀ ମାନେ ପୁଣି ସଂଗଠନ ଆରମ୍ଭ କରିଦେଲେ । କିନ୍ତୁ ୧୯୨୪ ମସିହାରେ ଦେଶରକ୍ଷା ଆଇନ୍ ଦ୍ୱାରା ସେମାନଙ୍କ ଉପରେ ଖୁବ୍ ପ୍ରହାର କରାଗଲା ।

ଉତ୍ତର ପ୍ରଦେଶ ଏବଂ ପଞ୍ଜାବରେ ଶଚୀନ୍ଦ୍ର ସାନ୍ୟାଲ୍, ଯୋଗେଶ୍ ଚଟ୍ଟାର୍ଜୀ ରାମପ୍ରସାଦ୍ ବିସ୍ମିଲ୍ ତଥା ଅନ୍ୟାନ୍ୟ ବିପ୍ଳବୀ ନେତାମାନେ ଏକତ୍ର ମିଳିତ ହୋଇ ଏକ ସଂଯୁକ୍ତ-ଦଳ ଗଠନ କଲେ । ପ୍ରୟାଗଠାରେ ବସିଥିବା ଏକ ବୈଠକରେ ବଙ୍ଗ ଦେଶର 'ଅନୁଶୀଳନ ଦଳ' ତଥା 'ହିନ୍ଦୁସ୍ଥାନ ପ୍ରଜାତନ୍ତ୍ର'ର ବିଲୋପ ସାଧନ କରାଗଲା । ଏହି ଦଳପାଇଁ ଏକ ନୂତନ ସମ୍ବିଧାନ ପ୍ରସ୍ତୁତ କରାଗଲା ଏବଂ ଏହାର ନାମ ରଖାଗଲା 'ହିନ୍ଦୁସ୍ଥାନ୍ ରିପବ୍ଲିକାନ୍ ଏସୋସିଏସନ୍' ଅର୍ଥାତ୍ 'ହିନ୍ଦୁସ୍ଥାନ୍ ପ୍ରଜାତାନ୍ତ୍ରିକ ସଙ୍ଘ' । ଶଚୀନ୍ଦ୍ର ସାନ୍ୟାଲ୍ ନିଜେ ଏ ସମ୍ବିଧାନ ପ୍ରଣୟନ କରିଥିଲେ । ସର୍ଦ୍ଦାର୍ ଭଗତ୍ ସିଂହ କାନ୍‌ପୁର ଆସିଲା ପରେ ଏହି ବିପ୍ଳବୀ ସଂଗଠନରେ ଯୋଗ ଦେଇଥିଲେ ଏବଂ ନିଜର ନାମ ପରିବର୍ତ୍ତନ କରି 'ବଳବନ୍ତ' ନାମରେ ନିଜକୁ ପରିଚିତ କରାଇଥିଲେ । ଏହି ନାମରେ ସେ 'ପ୍ରତାପ' ନାମକ ଏକ ପତ୍ରିକାରେ ନିୟମିତ ଲେଖାଲେଖି କରୁଥିଲେ । ଏହା ବ୍ୟତୀତ ଏହି 'ବଳବନ୍ତ' ନାମରେ ସେ ଅନ୍ୟାନ୍ୟ ପତ୍ର ପତ୍ରିକାରେ ମଧ୍ୟ ଲେଖା ଦେଉଥିଲେ । ସେ ସମୟରେ ଏହି ବିପ୍ଳବୀ ଦଳର ମୁଖ୍ୟ କାର୍ଯ୍ୟାଳୟ ଥିଲା ଉତ୍ତର ପ୍ରଦେଶର କାନ୍‌ପୁରଠାରେ । ଶଚୀନ୍ଦ୍ର ସାନ୍ୟାଲ୍ ଏହି କାର୍ଯ୍ୟାଳୟକୁ ବାରାଣସୀଠାରୁ କାନ୍‌ପୁରକୁ ସ୍ଥାନାନ୍ତରିତ କରିଥିଲେ । ସରକାରଙ୍କ ଆଖିରେ ଧୂଳି ଦେବାପାଇଁ ଏହି ବିପ୍ଳବୀ ସଂଗଠନର ମୁଖ୍ୟ କର୍ମକର୍ତ୍ତାମାନେ ନିଜର ନାମ ବଦଳାଇ ଗୋଟିଏ ଲେଖାଏଁ ନୂତନ ନାମ ଧାରଣ କରିଥିଲେ । ଯୋଗେଶଚନ୍ଦ୍ର ଚଟ୍ଟାର୍ଜୀ 'ହିନ୍ଦୁସ୍ଥାନ ରିପବ୍ଲିକାନ୍ ଏସୋସିଏସନ୍'ର ମୁଖ୍ୟ ସଙ୍ଗଠକ ଥିଲେ । ସେ ନିଜର ନାମ ପରିବର୍ତ୍ତନ କରି 'ଗୁପ୍ତ' ନାମରେ ନିଜକୁ ପରିଚିତ କରାଇଥିଲେ । ତାଙ୍କର ନେତୃତ୍ବରେ ସର୍ଦ୍ଦାର ଭଗତ୍ ସିଂହ ଏହି ସଂଗଠନରେ କାର୍ଯ୍ୟ କରିବାକୁ ଆରମ୍ଭ କରିଥିଲେ ।

୧୯୨୫ ମସିହା ଅଗଷ୍ଟ ୯ ତାରିଖ 'ହିନ୍ଦୁସ୍ଥାନ ରିପବ୍ଲିକାନ୍ ଏସୋସିଏସନ୍' ପକ୍ଷରେ ଏକ ସ୍ମରଣୀୟ ଦିବସ । ସେହିଦିନ ଉକ୍ତ ଦଳର ସଦସ୍ୟମାନେ ଲକ୍ଷ୍ନୌ ନିକଟବର୍ତ୍ତୀ କାକୋରୀ ନାମକ ଏକ ରେଳ ଷ୍ଟେସନରେ ରେଳଗାଡ଼ି ଅଟକାଇ ସେଥିରୁ ସରକାରୀ ଖଜଣା ଲୁଟି

ନେଇଥିଲେ । ଏହି ରେଲ ଡକାୟତିର କିଛିଦିନ ପୂର୍ବରୁ ଯୋଗେଶ ଚାଟାର୍ଜୀ ତାଙ୍କ ଦଳର କେନ୍ଦ୍ରୀୟ ବୈଠକରେ ଯୋଗ ଦେବାପାଇଁ କଲିକତା ଯାଉଥିଲେ । ଉତ୍ତର ପ୍ରଦେଶର ବିପ୍ଳବୀ ସଂଗଠନର ଏକ ଗୁପ୍ତ ରିପୋର୍ଟ ତାଙ୍କ ପାଖରେ ଥିଲା । ଏହି ରିପୋର୍ଟଟି ଏକ ସାଙ୍କେତିକ ଭାଷାରେ ଲେଖା ହୋଇଥିଲା । ଚାଟାର୍ଜୀ ମହାଶୟ କଲିକତା ବୈଠକରେ ଉପସ୍ଥାପନ କରିବାପାଇଁ ଏ ରିପୋର୍ଟଟିକୁ ସଙ୍ଗରେ ନେଉଥିଲେ । କିନ୍ତୁ ସେ ବୈଠକରେ ଯୋଗଦେବା ପୂର୍ବରୁ ହାଓଡ଼ା ପୋଲ ଉପରେ ତାଙ୍କୁ ପୁଲିସ୍ ଗିରଫ୍ କଲେ । ଫଳରେ ଉକ୍ତ ଗୁପ୍ତ ରିପୋର୍ଟ ଖଣ୍ଡି ପୁଲିସ୍‌ର ହସ୍ତଗତ ହେଲା । ଏହି ରିପୋର୍ଟରୁ ଉତ୍ତର ପ୍ରଦେଶରେ ଗଢ଼ାଯାଇଥିବା ବିପ୍ଳବୀ ସଂଗଠନ ଏବଂ ତାହାର ବିପ୍ଳବୀ ସଦସ୍ୟମାନଙ୍କ ବିଷୟରେ ପୁଲିସ୍ ବିଭାଗ କିଛିଟା ଆଭାସ ପାଇଲେ । ଏହାପରେ କାକୋରି ରେଲ ଡକାୟତି ବ୍ୟାପକ ଅନୁସନ୍ଧାନ ଚାଲିଲା ଏବଂ ଏ ଅପରାଧରେ ଉକ୍ତ ସଂଗଠନରେ କେତେକ ସମ୍ପୃକ୍ତ ଅଛନ୍ତି ବୋଲି ସନ୍ଦେହ କରାଗଲା । ଏ ବିଷୟରେ ପୁଲିସ୍ ବିଭାଗର ଅନୁସନ୍ଧାନ ଆହୁରି ତୀବ୍ର ହୋଇଉଠିଲା । ଫଳରେ ଉକ୍ତ ବିପ୍ଳବୀ ସଂଗଠନର ନାନା ରହସ୍ୟ ଗୋଟିକ ପରେ ଗୋଟିଏ ଜଣାପଡ଼ିଲା । ଏହି ଅବସରରେ ସର୍ଦ୍ଦାର୍ ଭଗତ୍ ସିଂହ କାନ୍‌ପୁର ଛାଡ଼ି ଲାହୋର ପଳାଇ ଆସିଲେ ।

•

## କଲେଜ ଶିକ୍ଷା

ଲାହୋର ଫେରି ଆସିବା ପରେ ଭଗତ୍ ସିଂହ ଉଚ୍ଚଶିକ୍ଷା ପାଇଁ ମନ ବଳାଇଲେ । ସେଠାରେ ସେ ଲାଲା ଲଜପତ୍ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ନ୍ୟାସ୍‌ନାଲ୍ କଲେଜରେ ନାମ ଲେଖାଇଲେ । ଏ କଲେଜରେ ଅତି ଅଳ୍ପଦିନ ମଧ୍ୟରେ ସେ ନିଜକୁ ଜଣେ ମେଧାବୀ ଓ ଅଧ୍ୟବସାୟୀ ଛାତ୍ର ହିସାବରେ ପରିଚିତ କରାଇ ପାରିଥିଲେ । ଇତିହାସ, ରାଜନୀତି ଓ ଅର୍ଥଶାସ୍ତ୍ର

ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଥିଲା । ତେଣୁ ସେ ଏହି ବିଷୟଗୁଡ଼ିକ ତନ୍ମୟ ହୋଇ ଅଧ୍ୟୟନ କରିବାକୁ ଲାଗିଲେ । ଏହି କଲେଜ୍‌ରେ ତାଙ୍କର ସୁଟ୍‌ଡେଣ୍ଟ ଓ ଭଗବତୀ ଚରଣ ନାମରେ ଦୁଇଜଣ ଅତି ଆତ୍ମୀୟ ବନ୍ଧୁ ଥିଲେ । ଏହି ତିନିଜଣ ବନ୍ଧୁ ମହମ୍ମଦ୍ ଓ ଅନ୍ୟାନ୍ୟ ଛାତ୍ରମାନଙ୍କ ସହାୟତାରେ ଏକ ଅଧ୍ୟୟନ କେନ୍ଦ୍ର ପରିଚାଳନା କରିବାକୁ ଆରମ୍ଭ କରିଦେଲେ । ଲାଲା ଲଜ୍‌ପତ୍ ରାୟ ଇତ୍ୟାଦିଙ୍କ ଦ୍ୱାରା ଗଠିତ 'ସର୍ଭେଣ୍ଟସ୍ ଅଫ୍ ଦି ପିପୁଲ୍ ସୋସାଇଟି' ଏହି ଅଧ୍ୟୟ କେନ୍ଦ୍ରକୁ ଉଦାର ଭାବରେ ସାହାଯ୍ୟ କରିବାକୁ ଲାଗିଲେ । ଏହି ସୋସାଇଟି ବିପ୍ଳବୀ ବିଦ୍ୟାର୍ଥୀମାନେ ମଗାଇଥିବା ସମସ୍ତ ପୁସ୍ତକ ଦ୍ୱାରକା-ଦାସ ଲାଇବ୍ରେରୀ ପାଇଁ ମଗାଇ ଆଣିଲେ ।

ନ୍ୟାସ୍‌ନାଲ୍ କଲେଜର ପ୍ରାଧ୍ୟାପକ ଛବିଲ ଦାସ ଏବଂ ଦ୍ୱାରକା ଦାସ ଲାଇବ୍ରେରୀର ଅଧ୍ୟକ୍ଷ ଶ୍ରୀ ରଜାରାମ ବୈଦେ ପ୍ରଭୃତି ଲବ୍ଧ ପ୍ରତିଷ୍ଠ ବ୍ୟକ୍ତିମାନେ ସର୍ଦ୍ଦାର ଭଗତ୍ ସିଂହଙ୍କ ଅଧ୍ୟୟନ ବିଷୟରେ ମତ ଦେଇ ଲେଖିଛନ୍ତି ଯେ, ସେ ପୁସ୍ତକଗୁଡ଼ିକୁ ଅତି ଦ୍ରୁତ ଭାବରେ ଗ୍ରାସ କରିଥିଲେ । ସରଦାର ଭଗତ୍-ପ୍ରେରଣା ଫଳରେ ନ୍ୟାସ୍‌ନାଲ କଲେଜର ପୁସ୍ତକାଳୟରେ ଜାତୀୟବାଦୀ ପୁସ୍ତକରେ ସଂଖ୍ୟା ବହୁତ ବଢ଼ି ଯାଇଥିଲା । ସେ ସମୟରେ ଅନ୍ୟ କୌଣସି ଲାଇବ୍ରେରୀ ବା ପୁସ୍ତକାଗାରରେ ଜାତୀୟ ସାହିତ୍ୟ ଉପରେ ଏତେ ସଂଖ୍ୟକ ପୁସ୍ତକ ସଂଗୃହିତ ହୋଇ ନଥିଲା । ଇଟାଲି, ରୁଷିଆ, ଆଇର୍‌ଲାଣ୍ଡ୍ ତଥା ଚୀନ୍‌ଦେଶର ବିପ୍ଳବ ସମ୍ବନ୍ଧରେ ନୂଆ ନୂଆ ଯେତେ ଐତିହାସିକ ପୁସ୍ତକ ପ୍ରକାଶ ପାଉଥିଲା ସେ ସମସ୍ତ ପୁସ୍ତକ ସର୍ଦ୍ଦାର ଭଗତ୍ ସିଂହଙ୍କ ଉଦ୍ୟମରେ ସଂଗୃହିତ ହୋଇ ନ୍ୟାସ୍‌ନାଲ୍ କଲେଜ ଲାଇବ୍ରେରୀରେ ରଖାଯାଉଥିଲା । କେବଳ ଫ୍ରେଞ୍ଚ୍ ବିପ୍ଳବ ଉପରେ ଲେଖାଯାଇଥିବା ଶତାଧିକ ଦୁଷ୍ପ୍ରାପ୍ୟ ପୁସ୍ତକ ଉକ୍ତ ପାଠାଗାରରେ ସ୍ଥାନ ପାଇଥିଲା । ଦୁର୍ଭାଗ୍ୟ ବଶତଃ ଇଂରେଜ ସରକାର ଏହି ଲାଇବ୍ରେରୀରେ ଖାନତଲାସ କରି ଏ ପ୍ରକାର ବହୁ ଜାତୀୟ ବାଦୀ ପୁସ୍ତକ ଜବତ୍ କରି ନେଇଥିଲେ ଏବଂ ବାକୀ ଯାହା ରହିଯାଇଥିଲା ତାହା ଏବେ ପାକିସ୍ଥାନ ସରକାରଙ୍କ ଅଧୀନକୁ ଚାଲି ଯାଇଛି ।

ଭଗତ୍‌ସିଂହ ରାଜନୀତି ଓ ଅର୍ଥନୀତି ଉପରେ ବିଭିନ୍ନ ପୁସ୍ତକ ପାଠରେ ରୁଚି ରଖିଥିଲେ ମଧ୍ୟ କେବଳ ପୁସ୍ତକାଗାରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ହୋଇ ନ ଥିଲେ । ବାହାର ଦୁନିଆ ସହିତ ତାଙ୍କର ଯଥେଷ୍ଟ ସମ୍ପର୍କ ଥିଲା । ଆବଶ୍ୟକତା ଅନୁସାରେ ସୁଯୋଗ ପାଇଲେ ସେ ଉତ୍ତର ପ୍ରଦେଶ ଓ ବଙ୍ଗଳାରେ ହେଉଥିବା ବିପ୍ଳବୀ ସଂଗଠନ ଗୁପ୍ତକର୍ମୀ ଗୁପ୍ତ ବୈଠକରେ ଯୋଗଦାନ କରୁଥିଲେ । ସେ ଭାରତର ତତ୍କାଳୀନ ବିପ୍ଳବୀ ନେତାମାନଙ୍କ ସହିତ ବ୍ୟକ୍ତିଗତ ଭାବରେ ଯୋଗାଯୋଗ ରଖିଥିଲେ ଏବଂ ବିପ୍ଳବୀ ସଂଗଠନ ଗୁପ୍ତକାର୍ଯ୍ୟ ଅଗ୍ରଗତି ଲାଗି ନିଜର ସୁଚିନ୍ତିତ ମତାମତ ଦେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ମତାମତକୁ ବିଚାର କରୁଥିଲେ । କାକୋରୀ ଷଡ଼ଯନ୍ତ୍ର ପରେ କେତେଥର ଲକ୍ଷ୍ନୌ ଯାଇ ସେଠାରେ ଏ ଘଟଣା ସମ୍ବନ୍ଧରେ ଚାଲିଥିବା ମାମଲା ବିଷୟ ଅନୁଧ୍ୟାନ କରୁଥିଲେ । ମୋକଦ୍ଦମା ଶୁଣାଣି ସମୟରେ ସେ ଅନେକ ଥର ଅଦାଲତରେ ମଧ୍ୟ ଉପସ୍ଥିତ ଥିଲେ । କେବଳ ଏତିକି ନୁହେଁ, କାକୋରୀ ରେଳ ଡକାୟତି ମାମଲାରେ ସମ୍ପୃକ୍ତ ହୋଇ ଯେଉଁ ବିପ୍ଳବୀମାନେ ଲକ୍ଷ୍ନୌ ଜିଲ୍ଲା-ଜେଲ୍‌ରେ ଅଟକ ରହିଥିଲେ, ସେମାନଙ୍କ ସହିତ ମଧ୍ୟ ସର୍ଦ୍ଦାର ଭଗତ୍‌ସିଂହ ଗୁପ୍ତ ସମ୍ପର୍କ ରଖିଥିଲେ । ବିଚାରାଧୀନ ବନ୍ଦୀମାନଙ୍କୁ କପଟ ଭାବରେ ଜେଲ୍‌ରୁ ମୁକ୍ତ କରିବାକୁ ହେବ, ସେ ବିଚାରରେ ମନୋଯୋଗ ସହକାରେ ଉପାୟ ଚିନ୍ତା କରିବାକୁ ଲାଗି ପଡ଼ିଥିଲେ । ଏହି ସମୟରେ ପୁଲିସ ତାଙ୍କୁ ଗିରଫ୍ କରିବା ପାଇଁ ଉଦ୍ୟମ କରିଥିଲେ । କିନ୍ତୁ ସେ ଅତି ଅଳ୍ପକେ ଏ ବିପଦରୁ ଖସିଯାଇଥିଲେ । ବନ୍ଦୀ ବିପ୍ଳବୀ ବନ୍ଧୁମାନଙ୍କୁ ମୁକ୍ତ କରିବା ପାଇଁ ଶେଷରେ ଯେତେବେଳେ ତାଙ୍କର ସମସ୍ତ ଯୋଜନା ବିଫଳ ହେଲା, ସେତେବେଳେ ସେ କାନପୁର୍ ଚାଲିଆସିଲେ ଏବଂ ସେଠାରେ କିଛିଦିନ ଅବସ୍ଥାନ କଲେ ।

ଏହି ସମୟରେ ଅର୍ଥାତ୍ ୧୯୨୭ ମସିହାରେ କାନ୍‌ପୁରରେ ଅବସ୍ଥାନ କରିବା ସମୟରେ ଭଗତ୍‌ସିଂହଙ୍କ ମଧ୍ୟରେ ଥିବା ସଂଗଠନ ଶକ୍ତିର ପରିଚୟ ମିଳିଥିଲା । କାକୋରୀ ଷଡ଼ଯନ୍ତ୍ର ଫଳରେ 'ହିନ୍ଦୁସ୍ଥାନ ପ୍ରଜାତାନ୍ତ୍ରିକ ସଂଘ' ଛିନ୍ନ ଭିନ୍ନ ଓ ଶିଥିଳ ହୋଇ ପଡ଼ିଥିଲା । ଏ ସଂଘର ଅଧିକାଂଶ ନେତା

କାରାଗାରରେ ଆବଦ୍ଧ ହୋଇ ରହିଥିଲେ । ତାଙ୍କ ଯେଉଁମାନେ ବାହାରେ ଥିଲେ, ସେମାନେ ସଙ୍ଘର ଉନ୍ନତି କଳ୍ପେ ଅଧିକ କିଛି କରିପାରୁ ନ ଥିଲେ । ଭାରତୀୟ ବିପ୍ଳବୀ ସଂଗଠନର ଏହି ଦୁର୍ଦ୍ଦିନରେ ସର୍ଦ୍ଦାର ଭଗତ୍‌ସିଂହ ନୀରବଦ୍ରଷ୍ଟା ହୋଇ ରହିପାରିଲେ ନାହିଁ । ସେ ସଙ୍ଗେ ସଙ୍ଗେ କାନପୁରର ବିଜୟକୁମାର ସିହ୍ନା ଓ ଲାହୋର୍‌ର ସୁଖ୍‌ଦେବଙ୍କ ସହିତ ମିଳିତ ହୋଇ ଉତ୍ତରପ୍ରଦେଶ ଓ ପଞ୍ଜାବରେ ବଞ୍ଚି ରହିଥିବା ଦୁର୍ବଳ ବିପ୍ଳବୀ ସଂଗଠନ ଗୁଡ଼ିକର ପୁନର୍ଗଠନ ପାଇଁ ତତ୍ପର ହୋଇ ପଡ଼ିଲେ । ଏଥିପାଇଁ ସେ ନିଜର ଦୁଇବନ୍ଧୁଙ୍କ ସହ ମନ୍ତ୍ରଣା କରି ନିଜେ ଉପଯୁକ୍ତ ଉପାୟ ନିରୂପଣ କରିବାକୁ ଲାଗିଲେ ।

କାକୋରୀ ରେଲ ଡକାୟତିରେ ସମ୍ପୃକ୍ତ ସର୍ଦ୍ଦାର ଭଗତ୍‌ସିଂହଙ୍କ ଅନ୍ୟ ଜଣେ ସହଯୋଗୀ ଶ୍ରୀ ଚନ୍ଦ୍ରଶେଖର ଆଜାଦ୍ 'ପଣ୍ଡିତ୍‌ଜୀ' ନାମକ ଏକ ଛଦ୍ମ ନାମ ଧାରଣ କରି ଫେରାର ହୋଇ ଯାଇଥିଲେ । ସେ ସେତେବେଳେ ଉତ୍ତର ପ୍ରଦେଶ ଓ ମଧ୍ୟପ୍ରଦେଶରେ ଥିବା ବିପ୍ଳବୀ ସଂଗଠନ ଗୁଡ଼ିକୁ ପୁନର୍ଗଠନ କରିବାରେ ନେତୃତ୍ୱ ଗ୍ରହଣ କରିଥିଲେ । ସେ ନିଜେ କାକୋରୀ ଘଟଣାରେ ଫେରାର ହୋଇଥିଲେ ମଧ୍ୟ ତାଙ୍କର ଯେଉଁ ବନ୍ଧୁମାନେ ଏଥିରେ ବନ୍ଦୀ ହୋଇ ଯାଇଥିଲେ, ସେମାନଙ୍କ ବିଷୟରେ ସେ ସମସ୍ତ ଖବର ରଖୁଥିଲେ । ଏହି ବନ୍ଦୀମାନଙ୍କୁ ପୁଲିସ୍ ଗାଡ଼ିରେ ନେବା ସମୟରେ ସେ ବହୁବାର ରାସ୍ତା ଧାରରେ ଛିଡ଼ାହୋଇ ତାହା ଦେଖିଛନ୍ତି ଏବଂ ନିଭୃତରେ ସେମାନଙ୍କୁ ଅଭିବାଦନ ଜଣାଇଛନ୍ତି । ବନ୍ଦୀ ହୋଇଥିବା ବନ୍ଧୁମାନଙ୍କୁ ମୁକ୍ତ କରିବା ପାଇଁ ସେ ନାନା ଉପାୟ ଅବଲମ୍ବନ କରି ମଧ୍ୟ ଶେଷରେ ବ୍ୟର୍ଥ ମନୋରଥ ହୋଇଥିଲେ । ତଥାପି ସେ ନିଜ କାର୍ଯ୍ୟରୁ ବିରତ ହୋଇ ନ ଥିଲେ । ଶେଷରେ ସେ ଝାନ୍‌ସିକୁ ନିଜର କର୍ମ-କ୍ଷେତ୍ର ରୂପେ ଗ୍ରହଣ କରିଥିଲେ । ଏହାପରେ ଝାନ୍‌ସି ବିପ୍ଳବୀମାନଙ୍କ ଆନ୍ଦୋଳନର ଏକ ମୁଖ୍ୟ କେନ୍ଦ୍ରରେ ପରିଣତ ହେଲା । ଚନ୍ଦ୍ରଶେଖରଙ୍କ ଅବିଶ୍ରାନ୍ତ ଉଦ୍ୟମ ବଳରେ ବିପ୍ଳବୀ ସଂଗଠନଗୁଡ଼ିକର ପ୍ରଭାବ ସମଗ୍ର ଭାରତବର୍ଷରେ ବିସ୍ତାରଲାଭ କରିଥିଲା । ସେଥିପାଇଁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାର ସୁଯୋଗ ମଧ୍ୟ ତାଙ୍କୁ ମିଳିଥିଲା । ଚନ୍ଦ୍ରଶେଖର୍ ଆଜାଦ୍ ସେ କେବଳ ସମଗ୍ର ଭାରତର ବିପ୍ଳବୀ ସଂଗଠନଗୁଡ଼ିକର

ପ୍ରଚାର ଘଟାଇଥିଲେ ତାହା ନୁହେଁ, ସେ ଏହି ସଗଠନର ନୂତନ ଏବଂ ଅନଭିଜ୍ଞ ସଭ୍ୟମାନଙ୍କୁ ବହୁ ଭାବରେ ତାଲିମ୍ ଦେବାର ଦାୟିତ୍ୱ ମଧ୍ୟ ବହନ କରିଥିଲେ । ସେ ସମୟର ବିପ୍ଳବୀମାନଙ୍କ ମଧ୍ୟରେ ଅବ୍ୟର୍ଥ ଲକ୍ଷ୍ୟ ହାସଲ କରିବାରେ ସେ ଥିଲେ ପ୍ରଥମ ଏବଂ ଏ ଦିଗରେ ଦ୍ୱିତୀୟ ବ୍ୟକ୍ତି ଥିଲେ ରାଜଗୁରୁ । ଏହି ରାଜଗୁରୁଙ୍କୁ ଲାହୋର୍ ଷଡ଼ଯନ୍ତ୍ର ମାମଲାରେ ଫାଶୀଦଣ୍ଡାଦେଶ ମିଳିଥିଲା ।



## ବିପ୍ଳବର ପ୍ରଥମ ପର୍ବ - ଲାହୋର୍ ବୋମାକାଣ୍ଡ

୧୯୨୭ରୁ ୧୯୨୮ ମସିହା ମଧ୍ୟରେ ବିପ୍ଳବୀ ସଗଠନର କାର୍ଯ୍ୟ ପୂର୍ଣ୍ଣ ଉତ୍ସାହରେ ଆରମ୍ଭ ହୋଇଥିଲା । ଏହି ସମୟରେ ସର୍ଦ୍ଦାର୍ ଭଗତ୍‌ସିଂହଙ୍କ ଉନ୍ନତ ଭାବନାର ପରିଚୟ ମିଳିଥିଲା । କାକୋରି ଷଡ଼ଯନ୍ତ୍ରରେ ସମ୍ପୃକ୍ତ ଥିବା ଅପରାଧରେ ବନ୍ଦୀ ହୋଇଥିବା ବିପ୍ଳବୀମାନଙ୍କ ମଧ୍ୟରୁ ଚାରିଜଣ ଯୁବକଙ୍କୁ ଫାଶୀଦଣ୍ଡ ଏବଂ ଅନ୍ୟ କେତେଜଣଙ୍କୁ ଦୀର୍ଘଦିନ କାରାଦଣ୍ଡ ଦିଆଯାଇଥିଲା । ଏ ଘଟଣା ଚିନ୍ତାଶୀଳ ଭଗତ୍‌ସିଂହଙ୍କ ହୃଦୟରେ ଏକ ଆଲୋଡ଼ନ ସୃଷ୍ଟିକଲା । ଦଣ୍ଡ ପାଇଥିବା ବନ୍ଧୁମାନଙ୍କ ପାଇଁ ଦୁଃଖ ଏବଂ ଦଣ୍ଡ ଦେଇଥିବା ସରକାରଙ୍କ ପ୍ରତି ପ୍ରତିହିଂସାପୂର୍ଣ୍ଣ ଭାବନାରେ ତାଙ୍କର ଯୁବକ ହୃଦୟ ଅସ୍ଥିର ହୋଇ ଉଠିଲା । ବିପ୍ଳବୀ ସଗଠନ ଗୁଡ଼ିକର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ତାଙ୍କ ହୃଦୟରେ ସ୍ୱତଃ ସାହସ ଏବଂ ପ୍ରେରଣା ଜାତ ହେଲା । ବନ୍ଧୁମାନଙ୍କ ଫାଶୀ ଦଣ୍ଡର ପ୍ରଥମ ପ୍ରତିକ୍ରିୟା ସ୍ୱରୂପ ତାଙ୍କ ହୃଦୟରେ ପ୍ରତିହିଂସାର ବହ୍ନି ଜଳିଉଠିଲା । ସେ ଇଂରେଜମାନଙ୍କ ହତ୍ୟାକରି ଚାରିବନ୍ଧୁଙ୍କ ମୃତ୍ୟୁଦଣ୍ଡର ପ୍ରତିଶୋଧ ନେବାକୁ ଦୃଢ଼ ସଂକଳ୍ପ ହେଲେ । ୧୯୨୭ ମସିହାରେ ସର୍ଦ୍ଦାର୍

ଭଗତ୍‌ସିଂହ ଏ ଦଗରେ ନିଜର ଶକ୍ତି ପ୍ରୟୋଗ କରିବାକୁ ପ୍ରୟାସ କଲେ । କିନ୍ତୁ ଏଥିରେ ସେ ବ୍ୟର୍ଥମନୋରଥ ହୋଇଥିଲେ ।

ଏ ଦଗରେ ଉଲ୍ଲେଖଯୋଗ୍ୟ ସାଫଲ୍ୟ ହାସଲ କରିବାପାଇଁ ୧୯୨୬ ମସୀହାରେ ବିପ୍ଳବୀ ଦଳର ମୁଖ୍ୟ କର୍ମକର୍ତ୍ତାମାନଙ୍କର ଏକ ବୈଠକ କାନପୁର ଠାରେ ଆହ୍ୱାନ କରାଯାଇଥିଲା । ଏହି ବୈଠକରେ ସ୍ଥିର କରାଗଲା ଯେ, ଦଳର ପ୍ରଧାନ ଏବଂ ସର୍ବପ୍ରଥମ କାର୍ଯ୍ୟ ହେବ ଏହାର ପୁନର୍ଗଠନ । ଏହି ଉଦ୍ଦେଶ୍ୟରେ ସର୍ଦ୍ଦାର ଭଗତ୍‌ସିଂହଙ୍କୁ ତାଙ୍କର ଅନ୍ୟ ଜଣେ ସହଯୋଗୀ ଶ୍ରୀ ବିଜୟକୁମାର ସିହ୍ନାଙ୍କ ସହିତ ଉତ୍ତରପ୍ରଦେଶ, ବିହାର ଓ ପଞ୍ଜାବରେ ଅବିଶ୍ରାନ୍ତ ଭାବରେ ଗସ୍ତ କରିବାକୁ ଲଗିଲେ । ଚନ୍ଦ୍ରଶେଖର ଆଜାଦ୍‌ଙ୍କ ପଛରେ ସର୍ବଦା ପୁଲିସ୍‌ର ସନ୍ଧାନୀ ଦୃଷ୍ଟି ରହିଥିଲା । ସୁତରାଂ ପ୍ରକାଶ୍ୟ ଭାବରେ ସେ ସର୍ଦ୍ଦାର୍ ଭଗତ୍‌ସିଂହ ପ୍ରମୁଖଙ୍କ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିପାରୁ ନ ଥିଲେ । କିନ୍ତୁ ଏଥିପାଇଁ ଯେ ସେ ସମସ୍ତ ବିଷୟରେ ନିଶ୍ଚେଷ୍ଟ ଏବଂ ନିରସ୍ତ ରହୁଥିଲେ, ତାହା ନୁହେଁ । ପଛରେ ଲୁଚିରହି ସେ ନବାଗତ, ଅନଭିଜ୍ଞ ଯୁବକମାନଙ୍କୁ ଉଚ୍ଚ ଆଦର୍ଶ-ବାଦ ଓ ପବିତ୍ର ତ୍ୟାଗ ବିଷୟରେ ପ୍ରେରଣା ଯୋଗାଉଥିଲେ ।

ପୂର୍ଣ୍ଣ ଉତ୍ସାହର ସହିତ ସର୍ଦ୍ଦାର ଭଗତ୍‌ସିଂହ ବିପ୍ଳବୀ-ଦଳର ପୁନର୍ଗଠନ କାର୍ଯ୍ୟ ନିଜ ହାତରେ ବହନ କରିଥିଲେ । କିନ୍ତୁ ଗୋଟିଏ ବିଚିତ୍ର ଘଟଣା ଘଟିବା ଫଳରେ କିଛିଦିନ ପାଇଁ ତାଙ୍କର କାର୍ଯ୍ୟ ଶିଥିଳ ହୋଇ ପଡ଼ିଥିଲା । ୧୯୨୬ ମସୀହା ଅକ୍ଟୋବର ମାସ ଦଶହରା ଉତ୍ସବ ଉପଲକ୍ଷେ ଲାହୋରରେ ବହୁ ଜନସମାଗମ ହୋଇଥିଲା । ଏହି ଜନତା ଉପରକୁ କୌଣସି ଜଣେ ଦୁର୍ବୃତ୍ତ ଅତର୍କିତ ଭାବରେ ବୋମା ଫିଙ୍ଗିବାରୁ ବହୁଲୋକ ଆହତ ହେଲେ । ସେ ସମୟରେ ବିପ୍ଳବୀ ସଂଗଠନ ବିଷୟରେ ପୁଲିସ୍ ବିଭାଗ ସମ୍ପୂର୍ଣ୍ଣ ଅବହିତ ଥିଲେ । ତେଣୁ ପଞ୍ଜାବ ପୁଲିସ୍ ବିନା ଅନୁସନ୍ଧାନରେ କେବଳ ଅନୁମାନ ଉପରେ ନିର୍ଭର କରି ଏ ଦୁର୍ଘଟଣାକୁ ବିପ୍ଳବୀ ଦଳର କାର୍ଯ୍ୟ ବୋଲି ଘୋଷଣା କରିଦେଲେ । ଫଳରେ ଦୁର୍ଘଟଣା ଦିନ ଲାହୋର୍‌ରେ ଉପସ୍ଥିତ ଥିବା

ବିପ୍ଳବୀଦଳର ମୁଖ୍ୟ କର୍ମୀମାନଙ୍କୁ ପୁଲିସ୍ ଖୋଜିବାକୁ ଲାଗିଲେ । ସର୍ଦ୍ଦାର ଭଗତ୍‌ସିଂହ ସେଠାରେ ପୁଲିସ୍ ବର୍ବରତାର ପ୍ରଥମ ଶିକାର ହେଲେ । ପୁଲିସ୍ ତାଙ୍କୁ ଗିରଫ କରି ଲାହୋର୍‌ର ବ୍ରୋଷ୍ଟାଲ୍ ଜେଲ୍‌ରେ ଆବଦ୍ଧ କରି ରଖିଥିଲେ । ଏହି ବ୍ରୋଷ୍ଟାଲ୍ ଜେଲରେ ପ୍ରଥମେ ରାଜନୈତିକ ବନ୍ଦୀମାନେ ସାମୂହିକ ଭାବରେ ଅନଶନ କରିଥିବାରୁ ସେ ସମୟରେ ଏହା ମହତ୍ତ୍ୱପୂର୍ଣ୍ଣ ଥିଲା । ବିଚାର ପାଇଁ ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ହାଜର ନ କରାଇ ସର୍ଦ୍ଦାର ଭଗତ୍‌ସିଂହଙ୍କୁ ନେତେଦିନ ଧରି କାରାଗାରର ଅନ୍ଧକାର ପ୍ରକୋଷ୍ଠ ମଧ୍ୟରେ ଆବଦ୍ଧ କରି ରଖାଯାଇଥିଲା । ତାଙ୍କୁ କାହିଁକି ଗିରଫ କରାଯାଇଥିଲା ସେ ବିଷୟ ମଧ୍ୟ ସେ ଜାଣିପାରି ନ ଥିଲେ । କିନ୍ତୁ ସେ ଯାହା ହେଉନା କାହିଁକି, ଏହା ତାଙ୍କ ଜୀବନର ଏକ ବିଶିଷ୍ଟ ଘଟଣା; କାରଣ ବନ୍ଦୀ ହେବାଦ୍ୱାରା ଜେଲ୍‌ର ଆଭ୍ୟନ୍ତରୀଣ ଅବସ୍ଥା ବିଷୟ ଜାଣିବା ପାଇଁ ତାଙ୍କୁ ଏକ ସୁଯୋଗ ମିଳିଲା । ସେଥିପାଇଁ ସେ ଅଢ଼େଇବର୍ଷ ପରେ କାରାଗାର ମଧ୍ୟରେ ଅଟକା ରହିଥିବା ରାଜନୈତିକ ବନ୍ଦୀମାନଙ୍କର ଅବସ୍ଥା ସୁଧାରିବା ନିମିତ୍ତ ନିଜର ସହଯୋଗୀ ବନ୍ଧୁମାନଙ୍କ ସହିତ ମିଳିତ ହୋଇ ଜେଲ୍ କର୍ତ୍ତୃପକ୍ଷଙ୍କ ସହିତ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିବାକୁ ସ୍ଥିର କରିଥିଲେ ।

ଭଗତ୍‌ସିଂହ ଯେତେବେଳେ ଜାଣିପାରିଲେ ଯେ, ତାଙ୍କୁ ଲାହୋର୍ ବୋମା ଦୁର୍ଘଟଣା ପାଇଁ ଗିରଫ କରାଯାଇଛି, ସେତେବେଳେ ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ । ବିପ୍ଳବୀ ଷଡ଼ଯନ୍ତ୍ର ସହିତ ଜଡ଼ିତ ଥିବାରୁ ପୁଲିସ୍ ତାଙ୍କୁ ଯେକୌଣସି ମୁହୂର୍ତ୍ତରେ ଗିରଫ କରିବାର ଯଥେଷ୍ଟ ସମ୍ଭାବନା ଥିଲା । ଏ ସମ୍ଭାବନା ବିଷୟରେ ଭଗତ୍‌ସିଂହ ପୂର୍ଣ୍ଣମାତ୍ରାରେ ସଚେତନ ଥିଲେ । କିନ୍ତୁ ଦଶହରା ପର୍ବ ଉପଲକ୍ଷେ ଏକତ୍ରିତ ଥିବା ବହୁ ନିର୍ଦ୍ଦୋଷ ନରନାରୀ ଉପରେ ନିର୍ମମଭାବରେ ବୋମା ନିକ୍ଷେପ କରିବାଭଳି ଜଘନ୍ୟ ଅପରାଧ ଲାଗି ଯେ ତାଙ୍କୁ ଗିରଫ କରାଯିବ, ଏକଥା ସେ କେବେହେଲେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ । ଏ ମୋକଦ୍ଦମା କିଛିଦିନ ପରେ ଚାଲିଲା । ମାଜିଷ୍ଟ୍ରେଟ୍ ସାହେବ ଷାଠିଏହଜାର ଟଙ୍କା ଜାମିନ୍‌ରେ ତାଙ୍କୁ ଖଲାସ କରିଦେବାକୁ ଆଦେଶ ଦେଲେ । ସର୍ଦ୍ଦାର ଭଗତ୍‌ସିଂହ ଜଣେ ଧନୀ ପରିବାରର

ଉଲ୍ଲେଖ ଥିବା ବହେସ୍ତୁ ଦୁଇଟିକୁ ଉଲ୍ଲେଖ କରାଯାଇଛି । ତେଣୁ ଷାଠିଏ ହଜାର ଟଙ୍କା ଦେବା ତାଙ୍କ ପକ୍ଷରେ ବିଶେଷ କଷ୍ଟକର ବ୍ୟାପାର ନ ଥିଲା । କିନ୍ତୁ ଭଗତ୍‌ସିଂହ ଏହା ପସନ୍ଦ କଲେନାହିଁ । ଦୀର୍ଘକାଳ ଧରି ମୋକଦ୍ଦମା ଚାଲିଲା । ଶେଷରେ ଉଚ୍ଚ ନ୍ୟାୟାଳୟରେ ଜାମିନ୍ ଆଦେଶ ରଦ୍ଦ କରି ତାଙ୍କୁ ନିର୍ଦ୍ଦୋଷରେ ମୁକ୍ତ ଦିଆଗଲା । ଏ ଘଟଣାରେ ପୁଲିସ୍‌ର ଅନ୍ୟାୟ କାର୍ଯ୍ୟ ପଦାରେ ପଡ଼ିଗଲା । ପୁଲିସ୍ ସର୍ଦ୍ଦାର ଭଗତ୍‌ସିଂହଙ୍କୁ ମିଥ୍ୟାରେ ବୋମା ନିକ୍ଷେପ ମାମଲା ସହିତ ଜଡ଼ିତ କରି ବୃଥାରେ ତାଙ୍କୁ ଏତେ ହଟହଟା କରିଥିଲେ; ଅଥଚ ଏ ଘଟଣା ସହିତ ତାଙ୍କର ଟିକିଏହେଲେ ସମ୍ପର୍କ ନ ଥିଲା କିମ୍ବା ରହିବା ମଧ୍ୟ ସମ୍ଭବ ନୁହେଁ । କାରଣ ନିର୍ଦ୍ଦୋଷ ଜନତା ପ୍ରତି ତାଙ୍କର ଟିକିଏମାତ୍ର ଆକ୍ରୋଶ ନ ଥିଲା ।

ଷାଠିଏ ହଜାର ଟଙ୍କା ଜାମିନ୍‌ରେ ଯେତେବେଳେ ଭଗତ୍‌ସିଂହଙ୍କୁ ଜେଲରୁ ଖଲାସ କରାଗଲା, ସେତେବେଳେ ସେ ବିପ୍ଳବାତ୍ମକ କାର୍ଯ୍ୟକ୍ରମରେ ସ୍ୱଭାବତଃ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରି ପାରୁ ନ ଥିଲେ । କିନ୍ତୁ ସେ ଜନସେବାରେ ରତ ରହି ଏହି ସମୟର ସଦୁପଯୋଗ କରିଥିଲେ । ଏହିକବେଳେ ତାଙ୍କର ଦୁଇଟି କାର୍ଯ୍ୟ ବିଶେଷ ମହତ୍ତ୍ୱପୂର୍ଣ୍ଣ ଥିଲା । ପ୍ରଥମଟି ହେଲା ପ୍ରସିଦ୍ଧ ଯୁବ ଭାରତ ସଭାର ସଂଗଠନ ଏବଂ ଦ୍ୱିତୀୟଟି ହେଲା କାକୋରୀ ଷଡ଼ଯନ୍ତ୍ର ମାମଲାରେ ସମ୍ପୃକ୍ତ ବିପ୍ଳବୀମାନଙ୍କୁ ଯେଉଁ ଫାଶୀ ଦଣ୍ଡାଦେଶ ହୋଇଥିଲା, ତା ବିରୁଦ୍ଧରେ ଏକ ସାର୍ବଜନୀନ ଆନ୍ଦୋଳନର ଆୟୋଜନ । ତାଙ୍କଦ୍ୱାରା ପ୍ରତିଷ୍ଠିତ ଉକ୍ତ ଯୁବ ଭାରତ ସଭା ଅଳ୍ପଦିନ ମଧ୍ୟରେ ପଞ୍ଜାବର ଉତ୍ସାହୀ ଯୁବକମାନଙ୍କର ଏକ ଶ୍ରେଷ୍ଠ ଜାତୀୟ ସଂଗଠନରେ ପରିଣତ ହେଲା । ଏହି ଯୁବ ଭାରତ ସଭା ଯେ କେବଳ ପଞ୍ଜାବରେ ପ୍ରଚାର ଲାଭ କରିଥିଲା ତାହା ନୁହେଁ, ଉତ୍ତର ପ୍ରଦେଶରେ ମଧ୍ୟ ଏହାର ପ୍ରଭାବ ଭଲଭାବରେ ଅନୁଭୂତ ହେଲା । ଏ ସଂଗଠନ ସେ ସମୟରେ ଜାତୀୟ କଂଗ୍ରେସର କାର୍ଯ୍ୟକଳାପ ଓ ଗତିବିଧିକୁ ମଧ୍ୟ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଜାତୀୟ କଂଗ୍ରେସର କରାଚୀ ଅଧିବେଶନ ସମୟରେ ଉକ୍ତ ଯୁବଭାରତ ସଭାର ଏକ ସର୍ବଭାରତୀୟ ଅଧିବେଶନ ମଧ୍ୟ ଅନୁଷ୍ଠିତ ହୋଇଥିଲା । ଏ ଅଧିବେଶନର ମୁଖ୍ୟ ଆଲୋଚ୍ୟ

ବିପ୍ଳବ ଥିଲା ଜାତୀୟ ଆନ୍ଦୋଳନରେ ସମସ୍ତଙ୍କର ଯୋଗଦାନ । ଜାତୀୟ କଂଗ୍ରେସ୍, ଯୁବକମାନଙ୍କର ଉଗ୍ର ନୀତିକୁ ସର୍ବଦା ଘୃଣାଚକ୍ଷୁରେ ଦେଖୁଥିଲା । ତେଣୁ କରାଚୀ ଅଧିବେଶନରେ ଜାତୀୟ କଂଗ୍ରେସର ମୁଖ୍ୟ ପ୍ରସ୍ତାବ ଥିଲା ଉଗ୍ର ଯୁବକମାନଙ୍କୁ ଶାନ୍ତ କରିବା । କାକୋରୀ ଷଡ଼ଯନ୍ତ୍ର ସମ୍ବନ୍ଧରେ ଭଗତ୍-ସିଂହ ଯେଉଁ ସାର୍ବଜନୀନ କାର୍ଯ୍ୟକ୍ରମର ପରିକଳ୍ପନା କରିଥିଲେ, ତାର ଫଳ ସ୍ୱରୂପ ଯେଉଁଦିନ ଉକ୍ତ ମାମଲାରେ ସମ୍ପୃକ୍ତ ଚାରିଜଣ ବିପ୍ଳବୀଙ୍କୁ ଫାଶୀଦଣ୍ଡ ଦିଆଗଲା, ସେଦିନ ଭାରତର ବିଭିନ୍ନ ସ୍ଥାନରେ "କାକୋରୀ-ଦିବସ" ନାମରେ ଶୋକ ଦିବସ ପାଳନ କରାଗଲା । ୧୯୨୭ ମସିହା ଡିସେମ୍ବର ମାସ ୧୭ ତାରିଖ ଦିନ ଶ୍ରୀ ରାଜେନ୍ଦ୍ର ନାଥ ଲାହିଡ଼ୀଙ୍କୁ ତାଙ୍କର ଅନ୍ୟ ବିପ୍ଳବୀ ସାଥୀମାନଙ୍କ ପୂର୍ବରୁ ଗୋଣ୍ଡା ଜେଲ୍‌ରେ ଫାଶୀ-ଦଣ୍ଡ ଦିଆଯାଇଥିଲା । ସେହିବର୍ଷ ଡିସେମ୍ବର ୧୯ ତାରିଖ ଦିନ ଶ୍ରୀ ରାମପ୍ରସାଦ ବିସ୍ମିଲ୍‌ଙ୍କୁ ଗୋରଖ-ପୁରରେ, ଶ୍ରୀ ଅସ୍‌ଫାକୁଲ୍ଲା ଖାଁଙ୍କୁ ଫୈଜାବାଦ୍‌ରେ ଏବଂ ଶ୍ରୀ ରୋଶନ୍ ସିଂହଙ୍କୁ ଏଲାହାବାଦ୍‌ରେ ଫାଶୀଦଣ୍ଡ ଦିଆଯାଇଥିଲା ।

କାକୋରୀ-ଦିବସ ପାଳନ କରିବା ନିମିତ୍ତ ଆୟୋଜନ କରିବା ସମୟରେ ସର୍ଦ୍ଦାର ଭଗତ୍‌ସିଂହଙ୍କ ମନରେ ଏକ ନୂତନ କଳ୍ପନା ରୂପ ପାଇଲା । ୧୯୧୫–୧୬ ମସିହାରେ ଲାହୋର ଷଡ଼ଯନ୍ତ୍ରରେ ସମ୍ପୃକ୍ତ ହୋଇ ଯେଉଁ ଯୁବକମାନେ ଆତ୍ମବଳୀ ଦେଇଥିଲେ ସେମାନଙ୍କ ଜୀବନୀ ଓ କାର୍ଯ୍ୟ ଉପରେ ଏକ ସର୍ବସାଧାରଣ ଆଲୋଚନା ସଭାର ଆୟୋଜନ ପାଇଁ ସେ ବ୍ୟାକୁଳ ହୋଇପଡ଼ିଥିଲେ । କେବଳ ଏତିକି ନୁହେଁ ସେ ଉକ୍ତ ଶହୀଦ ମାନଙ୍କର ଜୀବନୀ ଉପରେ ଜଣାଶୁଣା ଲୋକଙ୍କଠାରୁ ତଥ୍ୟ ସଂଗ୍ରହ କରିବା ଓ ସେମାନଙ୍କର ଫଟୋ ସଂଗ୍ରହ କରିବାପାଇଁ ଲାଗିପଡ଼ିଥିଲେ । ବିପ୍ଳବୀ ସଂଗଠନର କାର୍ଯ୍ୟ ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ଜନସାଧାରଣଙ୍କୁ ଏକ ପ୍ରାଞ୍ଜଳ ଧାରଣା ଦେବାପାଇଁ ସେ 'କୀର୍ତ୍ତି ରସାଲ' ନାମକ ଏକ ଉର୍ଦ୍ଦୁ ସାପ୍ତାହିକ ପତ୍ରିକାର ପ୍ରକାଶନ ଆରମ୍ଭ କରିଦେଇଥିଲେ । ପତ୍ରିକା ମାଧ୍ୟମରେ ଏବଂ ପଞ୍ଜାବର ଶହୀଦମାନଙ୍କ ଫଟୋ-ଚିତ୍ରକୁ ଲଣ୍ଠନ ସ୍ଲାଇଡ୍ ଦ୍ୱାରା ବିଭିନ୍ନ ସ୍ଥାନରେ ପ୍ରଦର୍ଶନ କରି ସମଗ୍ର ଉତ୍ତର ଭାରତ ଓ ପଞ୍ଜାବରେ ପ୍ରବଳ ଜନମତ

ଜାଗ୍ରତ କରିବା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଏହି କଳ୍ପନାକୁ ବ୍ୟାପକ ଭାବରେ କାର୍ଯ୍ୟକାରୀ କରି ନ ପାରିଲେ ମଧ୍ୟ ଲାହୋର ଏବଂ ଏହାର ଆଖପାଖ ଅଞ୍ଚଳରେ ସଭା ସମିତିମାନ କରି ବିପ୍ଳବୀ ଶହୀଦ୍‌ମାନଙ୍କର ଜୀବନାଦର୍ଶ ଆଲୋଚନା କରିବାରେ ସେ ସଫଳକାମ ହୋଇଥିଲେ । ଲଣ୍ଡନ ସ୍ଲାଇଡ୍ ସହାୟତାରେ ଲାହୋର୍‌ରେ ବ୍ରାଡ୍‌ଲା ହଲ୍‌ରେ ସର୍ଦ୍ଦାର ଭଗତ୍‌ସିଂହ ପ୍ରଥମେ ତାଙ୍କର ଉପରୋକ୍ତ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ହଲ୍‌ଟି ଦର୍ଶକମାନଙ୍କଦ୍ୱାରା ପୂର୍ଣ୍ଣ ହୋଇ ଯାଇଥିଲା; କିନ୍ତୁ ଲୋକେ ଧୈର୍ଯ୍ୟଧରି ଶାନ୍ତ ଶୃଙ୍ଖଳାର ସହିତ ସହିଦ୍‌ମାନଙ୍କର ଜୀବନୀ-ଆଲୋଚନା ଶୁଣୁଥିଲେ । ଏଠାରେ ସ୍ମରଣ କରାଯାଇପାରେ ଯେ, ଭଗତ୍‌ସିଂହ ନିଜେ ଏ ସଭାରେ ଭାଷଣ ଦେବାକୁ ସୁଯୋଗ ପାଇ ନ ଥିଲେ ମଧ୍ୟ ପଶ୍ଚାତ୍‌ରେ ରହି ସେ ତାଙ୍କର ସାଥୀ ଭଗବତୀ ଚରଣଙ୍କୁ ଆଲୋଚନାରେ ସମସ୍ତ ଖୋରାକ ଯୋଗାଇ ଦେଉଥିଲେ । ସଭାରେ କେଉଁ ବିଷୟ ଆଲୋଚନା କରାଯିବ, ସେ ସମ୍ବନ୍ଧରେ ସେ ତାଙ୍କ ସାଥୀଙ୍କୁ ନିର୍ଦ୍ଦେଶ ଦେଉଥିଲେ । ଲଣ୍ଡନ-ସ୍ଲାଇଡ୍ ସହିତ ଶହୀଦ୍-ମାନଙ୍କର ଜୀବନୀ ଆଲୋଚନା କରିବା ଦ୍ୱାରା ଜନସାଧାରଣ ବିଶେଷଭାବରେ ପ୍ରଭାବିତ ହୋଇଥିଲେ । ଫଳରେ ପଞ୍ଜାବ ସରକାର ଏ ପ୍ରକାର ସଭା ସମିତି ଉପରେ ନିଷେଧାଜ୍ଞା ଜାରି କରିଦେଲେ ।

ଏଠାରେ ସର୍ଦ୍ଦାର ଭଗତ୍‌ସିଂହଙ୍କ ସାଥୀ ଭଗବତୀ ଚରଣଙ୍କ ବିଷୟରେ ସାମାନ୍ୟ ଆଲୋଚନା କରିବା ଆବଶ୍ୟକ ମନେହୁଏ । ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ, ନ୍ୟାସ୍‌ନାଲ୍ କଲେଜ୍‌ର ଅଧ୍ୟାପକ ଶ୍ରୀ ଜୟଚନ୍ଦ୍ର ବିଦ୍ୟାଲଙ୍କାରଙ୍କ ମାଧ୍ୟମରେ ସର୍ଦ୍ଦାର ଭଗତ୍‌ସିଂହ ତଥା ଭଗବତୀଚରଣ, ବିପ୍ଳବୀ ଶଚୀନ୍ଦ୍ରନାଥ ସାନ୍ୟାଲ୍‌ଙ୍କ ସଂସ୍ପର୍ଶରେ ଆସିଥିଲେ । ଶଚୀନ୍ଦ୍ରନାଥ ଏ ଦୁଇଜଣ ଯୁବକଙ୍କର ନିଷ୍ଠା ଓ କର୍ମପ୍ରବଣତାରେ ମୁଗ୍ଧ ହୋଇ ସେମାନଙ୍କୁ ସଙ୍ଗେ ସଙ୍ଗେ ତାଙ୍କ ବିପ୍ଳବୀ ସଂଗଠନର ସଦସ୍ୟ କରିନେଲେ । ଭଗବତୀ-ଚରଣ ଏକ ଧନୀ ପରିବାରର ଯୁବକ ଥିଲେ । ମିଲ୍‌ଟୀରମ ରୋଡ୍ ଉପରେ ତାଙ୍କର ଏକ ବଡ଼ ଘର ଥିଲା । ସେ ଘରଟିକୁ ବିପ୍ଳବୀ ସଂଗଠନ କାର୍ଯ୍ୟରେ ବ୍ୟବହାର କରିବା ପାଇଁ ଦାନ କରାଯାଇଥିଲା । ଭଗବତୀଚରଣ ବିବାହି

କରିଥିଲେ । ତାଙ୍କ ସହଧର୍ମିଣୀ ଶ୍ରୀମତୀ ଦୁର୍ଗାଦେବୀଙ୍କୁ ବିପ୍ଳବୀ ସଂଗଠନର ସଦସ୍ୟମାନେ 'ଭାଭିଜୀ' ( ଭାଉଜ ) ବୋଲି ସମ୍ବୋଧନ କରୁଥିଲେ । ପତି ପତ୍ନୀ ଦୁହିଁଙ୍କ ଯୋଗ ଦେଶମାତୃକାର ସେବାରେ ଜୀବନ ସମର୍ପଣ କରିବାର ଉଦାହରଣ ସେ ସମୟର ବିପ୍ଳବୀ ଇତିହାସରେ ବିରଳ ଥିଲା । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କ ଯୋଗ ସ୍ୱାଧୀନତା ସଂଗ୍ରାମରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଜଣେ ଦେଶସେବା ପାଇଁ ନିଜ ଜୀବନକୁ ପାଣିଛଡ଼ାଇ ଦେଇଥିଲେ ଏବଂ ସର୍ଦ୍ଦାର ଭଗତ୍‌ସିଂହଙ୍କୁ ନିରାପଦରେ ଲାହୋର୍ ସହର ବାହାରକୁ ନେଇଯିବା ପାଇଁ ନିଜର ତିନି ବର୍ଷ ଅଢ଼େଇବର୍ଷ ପୁଅର ଜୀବନକୁ ଉତ୍ସର୍ଗ କରି-ଦେଇଥିଲେ । ଭଗତ୍‌ସିଂହ ଏବଂ ବଟୁକେଶ୍ୱର ଦତ୍ତ ପ୍ରମୁଖ ବିପ୍ଳବୀମାନଙ୍କ ବିରୁଦ୍ଧରେ ମୋକଦ୍ଦମା ଚାଲିଥିବା ବେଳେ ସେମାନଙ୍କୁ ମୁକ୍ତ କରିବା ପାଇଁ ଭଗବତୀଚରଣ ମାରାତ୍ମକ ବୋମା ତିଆରି କରୁଥିଲେ । ଇରାବତୀ ନଦୀ ତଟବର୍ତ୍ତୀ ଏକ ନିଭୃତ, ନିର୍ଜନ ସ୍ଥାନରେ ଏ ବୋମା ପରୀକ୍ଷା କରିବା ସମୟରେ ସେ ମାରାତ୍ମକ ଭାବରେ ଆହତ ହେଲେ ଏବଂ ସେଇଥିରେହିଁ ସେ ପ୍ରାଣ ହରାଇଲେ । ଏହାପରେ ତାହାଙ୍କର ପତ୍ନୀ ଶ୍ରୀମତୀ ଦୁର୍ଗାଦେବୀ ସ୍ୱାମୀଙ୍କ ମୃତ୍ୟୁରେ ମ୍ରିୟମାଣ ନ ହୋଇ ଦେଶସେବାକୁ ଜୀବନର ପ୍ରଧାନ ବ୍ରତ ରୂପେ ଗ୍ରହଣ କରିନେଲେ । ସେ ଦୃଢ଼ ଏବଂ ନିର୍ଭୀକ ଚିତ୍ତରେ ବିପ୍ଳବୀ ସଂଗଠନରେ କାର୍ଯ୍ୟ କରିବାକୁ ଲାଗିଲେ । ସାଣ୍ଡାର୍ସ୍ ସାହେବଙ୍କ ହତ୍ୟାକାଣ୍ଡରେ ଜଡ଼ିତ ସର୍ଦ୍ଦାର ଭଗତ୍‌ସିଂହଙ୍କ ପ୍ରାଣରକ୍ଷା ପାଇଁ ଏହି ମହୀୟସୀ ମହିଳା ଯେଉଁ ଦୁଃସାହସିକ କାର୍ଯ୍ୟ କରିଥିଲେ, ତାହା ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହୋଇଯିବ ।

ସର୍ଦ୍ଦାର ଭଗତ୍‌ସିଂହଙ୍କ ଦ୍ୱାରା ଗଠିତ ନୂତନ ଯୁବ ଭାରତ ସଭା, ଜାତୀୟ କଂଗ୍ରେସ୍ ଅନୁଷ୍ଠାନ ଠାରୁ ବହୁ ବିଷୟରେ ଭିନ୍ନ ଥିଲା । ଏହି ସଭା ଗଠନ କରିବା ମୂଳରେ ତାଙ୍କର କି ଉଦ୍ଦେଶ୍ୟ ନିହିତ ଥିଲା, ତାହା ଏଠାରେ ବିଚାର କରିବାର ବିଷୟ । ପୃଥିବୀର ଦାରିଦ୍ର୍ୟଜନିତ ସମସ୍ୟା ଉପରେ ଚିନ୍ତା କରି ଭଗତ୍‌ସିଂହ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, କେବଳ ରାଜନୈତିକ ସ୍ୱାତନ୍ତ୍ର୍ୟ ହାସଲ କଲେ ଭାରତବର୍ଷକୁ ବିଦେଶୀମାନଙ୍କ ଶାସନ-

ନିଗଡ଼ରୁ ଉଦ୍ଧାର କରାଯାଇ ପାରିବ ନାହିଁ । ଏଥିପାଇଁ ପ୍ରତ୍ୟେକ ଭାରତବାସୀଙ୍କୁ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ପ୍ରଦାନ କରିବା ମଧ୍ୟ ଏକାନ୍ତ କର୍ତ୍ତବ୍ୟ । ଏ ଚିନ୍ତା ଭଗତ୍‌ସିଂହଙ୍କ ମୁଣ୍ଡରେହିଁ ପ୍ରଥମେ ପ୍ରବେଶ କରିଥିଲା । ଏଥିପାଇଁ ସେ ମୂଳତଃ କମ୍ୟୁନିଷ୍ଟ୍ ମତବାଦ ଉପରେ ନିର୍ଭର କରି ନୂତନ ଯୁବଭାରତ ସଭା ପ୍ରତିଷ୍ଠା କରିଥିଲେ । ଏହା ସତ୍ୟ ଯେ, ଏହି ସଂସ୍ଥା ମୁଖ୍ୟତଃ ଦେଶର ଦିନ ମଜୁରିଆ ଏବଂ କୃଷକମାନଙ୍କ ପାଇଁ ଗଠିତ ହୋଇଥିଲା । ଏହି ସଭା ମାଧ୍ୟମରେ ଦେଶର ଯୁବକମାନେ ଦରିଦ୍ରମାନଙ୍କର ସେବା କରୁଥିଲେ ।

ସମୟ ଅତିବାହିତ ହେବା ସଙ୍ଗେ ସଙ୍ଗେ ଭଗତ୍‌ସିଂହଙ୍କ ଦୃଷ୍ଟିକୋଣ ଏବଂ ବିଚାରଭଙ୍ଗୀ କ୍ରମଶଃ ପରିବର୍ତ୍ତିତ ହେବାକୁ ଲାଗିଲା । ୧୯୨୬-୨୭ ମସିହା ବେଳକୁ ସେ ସ୍ପଷ୍ଟ ମତ ଦେଇଥିଲେ ଯେ, ବିପ୍ଳବୀ ସଂଗଠନର ସମସ୍ତ ସାଧନା ମଧ୍ୟରୁ ସନ୍ତ୍ରାସବାଦ ଏକମତ ହେବା ଏକାନ୍ତ ବିଧେୟ । ଆସେମ୍ବ୍ଲି ସଦସ୍ୟମାନଙ୍କର ଦୃଢ଼ ଅପିଲ୍ ଦ୍ୱାରା କାକୋରୀ ଷଡ଼ଯନ୍ତ୍ରରେ ଅଭିଯୁକ୍ତ ବିପ୍ଳବୀମାନଙ୍କର ଫାଶୀଦଣ୍ଡ ହେବା ଫଳରେ ସନ୍ତ୍ରାସବାଦର ଆବଶ୍ୟକତା ଉପରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମିଥିଲା । ଏହା ସହିତ ଭାରତର ସମସ୍ୟା-ଗୁଡ଼ିକର ଗଭୀର ଅଧ୍ୟୟନ ଫଳରେ ତାଙ୍କର ଅନୁମାନ ହେଲା ଯେ, ଭାରତର ସମସ୍ୟା ପୃଥିବୀର ଅନ୍ୟାନ୍ୟ ଦେଶର ସମସ୍ୟାଗୁଡ଼ିକ ସହିତ ପ୍ରାୟ ସମାନ । ଲାହୋର ନ୍ୟାସ୍‌ନାଲ୍ କଲେଜରେ ଅଧ୍ୟୟନ କରିବା ସମୟରେ ଏହାଙ୍କ ଉପରେ ସମାଜବାଦର ପ୍ରଭାବ କ୍ରମଶଃ ବଢ଼ିବାକୁ ଲାଗିଲା । ରୁଷିଆର ଶାସନ ପଦ୍ଧତିକୁ ସେ ନିଜ ମତବାଦର ଆଦର୍ଶରୂପେ ଗ୍ରହଣ କରି-ନେଇଥିଲେ ।



## ବିପ୍ଳବର ଦ୍ୱିତୀୟ ପର୍ବ : ସନ୍ତ୍ରାସବାଦର ସୃଷ୍ଟି

ଲାହୋର୍ ବୋମା ଘଟଣାରୁ ମୁକ୍ତ ହେଲାପରେ ସର୍ଦ୍ଦାର ଭଗତ୍‌ସିଂହ ବିପ୍ଳବୀ ସଂଗଠନର ବିଭିନ୍ନ କାର୍ଯ୍ୟରେ ପୂର୍ଣ୍ଣପ୍ରାଣରେ ଲାଗିପଡ଼ିଲେ । ବିପ୍ଳବୀ ସଂଗଠନ ସେତେବେଳକୁ ଶିଥିଳ ହୋଇପଡ଼ିଥିଲା । ଭଗତ୍‌ସିଂହ ନିଜର ଉତ୍ସାହ ଓ ପ୍ରେରଣା ଦ୍ୱାରା ଏହି ଅର୍ଦ୍ଧମୃତ ସଂଗଠନରେ ନୂତନ ଜୀବନ ସଞ୍ଚାର କରିବାକୁ ଲାଗିଲେ । ସେ ସମୟରେ 'ହିନ୍ଦୁସ୍ଥାନ ସମାଜବାଦୀ ପ୍ରଜାତାନ୍ତ୍ରିକ ସଂଘ' ଭାଗ ଭାଗ ହୋଇ ଯାଇଥିଲା ଏବଂ ଏହା ଆଗରେ କୌଣସି ସୁଚିନ୍ତିତ ଓ ସୁନିର୍ଦ୍ଦିଷ୍ଟ ଯୋଜନା ବା କାର୍ଯ୍ୟକ୍ରମ ନ ଥିଲା । ଲାହୋର୍, ଦିଲ୍ଲୀ, କାନପୁର, ବାରାଣସୀ ଏବଂ ବିହାରର କେତେକ ସହରରେ ଥିବା ଏହି ଦଳର ଶାଖାଗୁଡ଼ିକ ସକ୍ରିୟ ଥିଲା । ଏହି ଦଳର ଆନୁକୂଲ୍ୟରେ ଅନ୍ୟ କେତେକ ସହରରେ କିଛି କିଛି କାର୍ଯ୍ୟ ମଧ୍ୟ ହେଉଥିଲା । ୧୯୨୮ ମସିହା ଜୁଲାଇ ମାସରେ ଏହି ଦଳର କେତେଜଣ ସଦସ୍ୟ କାନପୁରଠାରେ ଏକ ପ୍ରାରମ୍ଭିକ ବୈଠକରେ ଏକତ୍ରିତ ହୋଇଥିଲେ । ଦଳର ମୁଖ୍ୟ ସଦସ୍ୟ-ମାନଙ୍କର ଏକ ବୈଠକ ଡାକି ଶୀଘ୍ର କେନ୍ଦ୍ର ସମିତିର ପୁନର୍ଗଠନ କରିବା ନିମିତ୍ତ ଏକ ପ୍ରସ୍ତାବ ଏହି ପ୍ରାରମ୍ଭିକ ବୈଠକରେ ଗ୍ରହଣ କରାଯାଇଥିଲା ।

ଏହି ପ୍ରସ୍ତାବ ଅନୁସାରେ ସର୍ଦ୍ଦାର ଭଗତ୍‌ସିଂହ ଏବଂ କାନ୍‌ପୁରର ଅନ୍ୟ ଜଣେ ବିପ୍ଳବୀ କର୍ମୀ ଶ୍ରୀ ବିଜୟକୁମାର ସିହ୍ନା ଉକ୍ତ ପ୍ରସ୍ତାବିତ ବୈଠକ ଲାଗି ଉପଯୁକ୍ତ ସଦସ୍ୟ ସଂଗ୍ରହ କରିବା ପାଇଁ ସାରା ଦେଶ ଗସ୍ତରେ ବାହାରି-ଗଲେ । ୧୯୨୮ ମସିହା ସେପ୍‌ଟେମ୍ବର ୮ ତାରିଖ ଦିନ ଦିଲ୍ଲୀର ଫିରୋଜ୍-ଶାହା କୋଟ୍‌ଲାକ୍ ଫୋର୍ଟରେ ଏକ ମହତ୍ତ୍ୱପୂର୍ଣ୍ଣ ବୈଠକ ବସିଥିଲା । ଏହି ଐତିହାସିକ ବୈଠକ ଦୁଇଦିନ ଧରି ଚାଲିଲା ଏବଂ ଏଥିରେ ରାଜସ୍ଥାନର କୁନ୍ଦନ୍‌ଲାଲ୍, ବିହାରର ଫଣୀନ୍ଦ୍ର ଘୋଷ ଓ ମନମୋହନ ବାନାର୍ଜୀ, କାନ୍‌ପୁରର ସୁରେନ୍ଦ୍ର ପାଣ୍ଡେ ଓ ବ୍ରହ୍ମଦତ୍ତ ମିଶ୍ର, ପଞ୍ଜାବର ଭଗତ୍‌ସିଂହ ଓ ସୁଖ୍‌ଦେବ, ଉତ୍ତର ପ୍ରଦେଶର ଜୟଦେବ କପୁର ଓ ଶିବ ବର୍ମା ତଥା କାକୋରୀ ଷଡ଼ଯନ୍ତ୍ରରେ ସମ୍ପୃକ୍ତ ରାଜକୁମାର ସିହ୍ନାଙ୍କ ଅନୁଜ ବିଜୟକୁମାର ସିହ୍ନା ପ୍ରମୁଖ ପ୍ରସିଦ୍ଧ ବିପ୍ଳବୀ ନେତାମାନେ ଯୋଗ ଦେଇଥିଲେ । ବିଜୟକୁମାର

ସିହ୍ନା କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ନିଜ ଛାତ୍ରାବାସ ପ୍ରକୋଷ୍ଠରେ ଅସ୍ତ୍ରଶସ୍ତ୍ର ଲୁଚାଇ ରଖିଥିବା ଅପରାଧରେ ଦଣ୍ଡ ଭୋଗ କରିଥିଲେ । 'ହିନ୍ଦୁସ୍ଥାନ ସମାଜବାଦୀ ପ୍ରଜାତାନ୍ତ୍ରିକ ସଂଘର' ବଙ୍ଗଳାଶାଖା ତରଫରୁ କୌଣସି ସଦସ୍ୟ ଉକ୍ତ ବୈଠକରେ ଯୋଗ ଦେବାକୁ ଆସି ନ ଥିଲେ । ସେମାନଙ୍କୁ ଏଥିପାଇଁ ନିମନ୍ତ୍ରଣ କରାଯାଇଥିଲେ ମଧ୍ୟ ସେମାନେ ନୀରବ ରହିଥିଲେ; କାରଣ ଉତ୍ତରପ୍ରଦେଶ ଓ ପଞ୍ଜାବର ବିପ୍ଳବୀ ସଦସ୍ୟମାନେ ସନ୍ତ୍ରାସବାଦକୁ ନିଜ କାର୍ଯ୍ୟକ୍ରମର ମୁଖ୍ୟ ଅଙ୍ଗ ରୂପେ ଗ୍ରହଣ କରିଥିବା ସ୍ଥଳେ ବଙ୍ଗଳାର ସଦସ୍ୟମାନେ ଏ ମତର ସମ୍ପୂର୍ଣ୍ଣ ବିରୋଧୀ ଥିଲେ ।

୧୯୦୬-୭ ମସିହା ପରେ ବଙ୍ଗଳାର ବିପ୍ଳବୀମାନେ ସେମାନଙ୍କର ବିକାଶଧାରାକୁ ତିନୋଟି ଐତିହାସିକ ସ୍ଥିତି ମଧ୍ୟ ଦେଇ ପରିଚାଳନା କରିବାକୁ ଲାଗିଲେ । ପ୍ରଥମତଃ ଦେଶମାତୃକା ପାଇଁ ପ୍ରାଣୋତ୍ସର୍ଗ କରିବା ସକାଶେ ଛୋଟ ଛୋଟ ବିପ୍ଳବୀ ସଂଗଠନ ଗୁଡ଼ିକ ଏକତ୍ରିତ ହେଉଥିଲେ ଏବଂ ଏହି ସ୍ଥାନ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ବିପ୍ଳବୀମାନେ ମୁଖ୍ୟତଃ ସନ୍ତ୍ରାସବାଦକୁହିଁ ସେମାନଙ୍କର କାର୍ଯ୍ୟପଦ୍ଧତି ହିସାବରେ ଗ୍ରହଣ କରିଥିଲେ । ସେତେବେଳେ ସେମାନେ ମହାରାଷ୍ଟ୍ରର ବିପ୍ଳବୀ ସଂଗଠନ ଗୁଡ଼ିକର ଆଦର୍ଶକୁହିଁ ଅନୁସରଣ କରୁଥିଲେ । କିନ୍ତୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ସନ୍ତ୍ରାସବାଦୀ ହିସାବରେ ବଙ୍ଗଳାର ବିପ୍ଳବୀମାନେ ସେତେବେଳେ ମହାରାଷ୍ଟ୍ରର ବିପ୍ଳବୀମାନଙ୍କଠାରୁ ଟିକିଏ ଆଗରେ ଥିଲେ; କାରଣ ସେମାନେ ବନ୍ଧୁକ ( ରିଭଲଭର ) ସହିତ ବୋମା ମଧ୍ୟ ପ୍ରୟୋଗ କରିବାକୁ ଆରମ୍ଭ କରିଦେଇଥିଲେ । ଏହିପ୍ରକାର ବନ୍ଧୁକ ଓ ବୋମା ସେମାନଙ୍କର ଅସ୍ତ୍ର ଥିଲା ଏବଂ ଅତ୍ୟାଚାରୀ ଇଉରୋପୀୟ ଶାସକମାନେ ସେମାନଙ୍କର ଶିକାର ଥିଲେ । ସାଧାରଣ ଭାବରେ କହିବାକୁ ଗଲେ ଏହି ସମସ୍ତ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରି ବଙ୍ଗଳାର ବିପ୍ଳବୀମାନେ ଅତ୍ୟାଚାରୀ ଇଂରେଜ ଶାସକ ବର୍ଗଙ୍କୁ ସୁଯୋଗ ଦେଖି ହତ୍ୟା କରୁଥିଲେ ।

ଦ୍ୱିତୀୟତଃ ବଙ୍ଗଳାର କ୍ଷୁଦ୍ର କ୍ଷୁଦ୍ର ବିପ୍ଳବୀଦଳଗୁଡ଼ିକ ଏକତ୍ରିତ ହୋଇ ଏକ ବିରାଟ ସଂଗଠନ ସୃଷ୍ଟି କରିଥିଲେ । ପ୍ରଚୁର ହାରେ ଇଂରେଜ ଶାସକ

ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି କରିବା ଏ ବିପ୍ଳବୀ ସଂଗଠନର ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ବିପ୍ଳବୀମାନଙ୍କ ମଧ୍ୟରୁ କେହି କେହି ସ୍ୱେଚ୍ଛାକୃତ ଭାବରେ ନିଜ ନିଜର ଛାପାଖାନାରେ ଏହାର ପ୍ରଚାର ନିମନ୍ତେ ନାନାପ୍ରକାର ପୁସ୍ତିକା ଓ ପ୍ରଚାରପତ୍ର ଆଦି ଛାପୁଥିଲେ । ଏହି ଦ୍ୱିତୀୟ ପର୍ଯ୍ୟାୟରେ ବଙ୍ଗଳାର ବିପ୍ଳବୀମାନେ ଯେଉଁ ପ୍ରଚାର ସାମଗ୍ରୀମାନ ପ୍ରସ୍ତୁତ କରୁଥିଲେ ସାହିତ୍ୟିକ ଦୃଷ୍ଟିକୋଣରୁ ସେଗୁଡ଼ିକ ଅତି ଉଚ୍ଚକୋଟୀର ଥିଲା । ତତ୍‌ସଙ୍ଗେ ସଙ୍ଗେ ସେଗୁଡ଼ିକ ଅତ୍ୟନ୍ତ ପ୍ରେରଣାପ୍ରଦ, ଭାବୋଦ୍ଦୀପକ ଏବଂ ଜାତୀୟ ଭାବନାର ଶ୍ରେଷ୍ଠ ଉଦ୍‌ବୋଧକ ଥିଲା ।

ବସ୍ତୁତଃ ବଙ୍ଗଳାର ବିପ୍ଳବୀ ସଂଗଠନ ନିଜର କାର୍ଯ୍ୟସିଦ୍ଧି ପାଇଁ ଅନ୍ୟ ପ୍ରଦେଶର ବିପ୍ଳବୀ ସଂଗଠନଗୁଡ଼ିକ ସହିତ ସୁସମ୍ପର୍କ ସ୍ଥାପନ କରିବାକୁ ଲାଗିଲେ । ଏହି ସଂଗଠନ ଅତ୍ୟନ୍ତ ଶକ୍ତିଶାଳୀ ଥିଲା ଏବଂ ଏହାର କାର୍ଯ୍ୟକ୍ରମ ଗୁଡ଼ିକ ସୁଚିନ୍ତିତ ଓ ସୁନିୟନ୍ତ୍ରିତ ଥିଲା । କଲିକତାର ମୁଖ୍ୟ ରାଜପଥ ଉପରେ ଯାଉଥିବା ଏକ ଅସ୍ତ୍ରଶସ୍ତ୍ରପୂର୍ଣ୍ଣ ଗାଡ଼ିକୁ ବଙ୍ଗଳାର ବିପ୍ଳବୀମାନେ ଏହି ପର୍ଯ୍ୟାୟରେ ଲୁଣ୍ଠନ କରିଥିଲେ । ଏହି ଘଟଣା ଉପରେ ସେ 'ରୋଡ଼୍‌ଡା କେସ୍' ଚାଲିଥିଲା । ଏ ଲୁଣ୍ଠନରୁ ଯେଉଁ ଅସ୍ତ୍ରଶସ୍ତ୍ର ମିଳିଥିଲା ସେଗୁଡ଼ିକୁ ଭାରତର ବିଭିନ୍ନ ବିପ୍ଳବୀ ସଂଗଠନମାନଙ୍କ ମଧ୍ୟରେ ବିତରଣ କରାଯାଇଥିଲା । ବିପ୍ଳବୀ ରାସବିହାରୀ ବୋସଙ୍କ ମାଧ୍ୟମରେ ଏହି ଅସ୍ତ୍ରଶସ୍ତ୍ରଗୁଡ଼ିକ ମଧ୍ୟରୁ କେତେକ ବାରଣସୀ ଓ ପଞ୍ଜାବରେ କାର୍ଯ୍ୟ କରୁଥିବା ବିପ୍ଳବୀମାନଙ୍କୁ ମଧ୍ୟ ଦିଆଯାଇଥିଲା । ୧୯୨୮-୨୯ ମସିହାରେ ବଙ୍ଗଳାର ବିପ୍ଳବୀ ସଂଗଠନ ତାର ବିକାଶ ଧାରାର ତୃତୀୟ ପର୍ଯ୍ୟାୟରେ ପଦାର୍ପଣ କରିଥିଲା ।

ସେ ସମୟରେ ଚନ୍ଦ୍ରଶେଖର ଆଜାଦ୍ ଫେରାର୍ ଥିଲେ । ପୁଲିସ୍ ବ୍ୟାପକ ଭାବରେ ତାଙ୍କର ଅନୁସନ୍ଧାନ ଚଲାଇଥିଲେ । ଫିରୋଜ୍‌ଶାହା ତୁଗ୍‌ଲକ୍ ଫୋର୍ଟରେ ବସିଥିବା ବୈଠକରେ ସେ ଯୋଗ ଦେଇପାରି ନ ଥିଲେ । କିନ୍ତୁ ଏଥିପାଇଁ ସେ ତାଙ୍କର ବାର୍ତ୍ତା ଓ ସୁଚିନ୍ତିତ କାର୍ଯ୍ୟକ୍ରମର ଏକ ଲିଖିତ ବିବରଣୀ ପଠାଇଥିଲେ । ଏହି କାର୍ଯ୍ୟକ୍ରମ ଉପରେ ପୁଙ୍ଖାନୁପୁଙ୍ଖ

ଆଲୋଚନା ମଧ୍ୟ ହୋଇଥିଲା । ତାଙ୍କର ଅନୁପସ୍ଥିତିରେ ମଧ୍ୟ ଏହି ବୈଠକରେ ତାଙ୍କୁ ଆଜାଦ୍ ପାର୍ଟି ସୈନ୍ୟ ବିଭାଗର ମୁଖ୍ୟ କର୍ମକର୍ତ୍ତା ରୂପେ ନିଯୁକ୍ତ କରାଯାଇଥିଲା । ଏହାଛଡ଼ା ତାଙ୍କୁ ଅସ୍ତ୍ରଶସ୍ତ୍ର ଆୟୋଜନ ଓ ନିୟନ୍ତ୍ରଣ କରିବାର ଦାୟିତ୍ୱ ମଧ୍ୟ ଦିଆଯାଇଥିଲା ।

ଏହି ବୈଠକରେ ସର୍ଦ୍ଦାର ଭଗତ୍‌ସିଂହ ବ୍ୟକ୍ତିଗତ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ ସମ୍ବନ୍ଧରେ ଏକ ସଂଶୋଧିତ ଓ ପରିବର୍ତ୍ତିତ ପ୍ରସ୍ତାବ ଆଣିଥିଲେ । ସନ୍ତ୍ରାସବାଦୀ କାର୍ଯ୍ୟକ୍ରମକୁ ଲୋକପ୍ରିୟ କରିବା ଏ ପ୍ରସ୍ତାବର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ତାଙ୍କ ମତରେ ଏପରି ସନ୍ତ୍ରାସବାଦୀ କାର୍ଯ୍ୟ କରାଯିବା ଉଚିତ, ଯାହା ଦେଶବାସୀଙ୍କ ଚିନ୍ତାର ଅନୁକୂଳ ହେବ; ତଥା ଜାତୀୟ ଆନ୍ଦୋଳନକୁ ମଧ୍ୟ ପ୍ରଚୁର ପ୍ରେରଣା ଓ ଉତ୍ସାହ ଯୋଗାଉଥିବ । ସେ ସମୟରେ ସାଇମନ୍ କମିଶନ୍‌ଙ୍କ ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି ହୋଇ-ଥିଲା । ଏହି କମିଶନ୍ ବିରୁଦ୍ଧରେ ଦେଶବ୍ୟାପୀ ଆନ୍ଦୋଳନ ଏବଂ ବିକ୍ଷୋଭ ପ୍ରଦର୍ଶନ କରାଯିବାରୁ ବିକ୍ଷୋଭକାରୀଙ୍କ ଉପରେ ପୁଲିସ୍‌ର ଜୁଲୁମ୍ ବହୁ ପରିମାଣରେ ବଢ଼ିଯାଇଥିଲା । ପୁଲିସ୍‌ର ଅତ୍ୟାଚାର ଓ ବର୍ବରତା ଫଳରେ ଜନସାଧାରଣ ଅତିଶୟ ଅତିଷ୍ଠ ଓ କ୍ରୋଧଜର୍ଜରିତ ହୋଇ ପଡ଼ିଲେ । ଭଗତ୍‌ସିଂହ ଏହି ସରକାର-ବିରୋଧୀ ପ୍ରବଳ ଜନମତର ସଦୁପଯୋଗ କରିବା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ସାଇମନ୍ କମିଶନ୍ ଉପରକୁ ବୋମା ନିକ୍ଷେପ କରିବା ପାଇଁ ସେ ଏକ ଯୋଜନା ପ୍ରସ୍ତୁତ କରିବାକୁ ଲାଗିପଡ଼ିଲେ । ସେ ଏ କାର୍ଯ୍ୟର ଗୁରୁଦାୟିତ୍ୱ ମନମୋହନ ଗୁପ୍ତ ନାମକ ଜଣେ ବିପ୍ଳବୀ ସନ୍ତ୍ରାସବାଦୀଙ୍କ ଉପରେ ନ୍ୟସ୍ତ କରିଥିଲେ । ଯେଉଁ ମନ୍ମଥ ଗୁପ୍ତଙ୍କୁ କାକୋରୀ ଷଡ଼ଯନ୍ତ୍ର ମାମଲାରେ ଚଉଦବର୍ଷ ନିର୍ବାସନ ଦଣ୍ଡ ଦିଆଯାଇଥିଲା ମନମୋହନ ଗୁପ୍ତ ହେଉଛନ୍ତି ତାଙ୍କର ଅନୁଜ । ମନମୋହନ ଗୁପ୍ତ ତାଙ୍କ କାର୍ଯ୍ୟ ସମ୍ପାଦନ ପାଇଁ ନିଜର କେତେଜଣ ବନ୍ଧୁଙ୍କ ସହିତ ବୋମା ନେଇ ବାହାରିଗଲେ ସତ; କିନ୍ତୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପୂର୍ବରୁ ମନ୍‌ମାଡ୍ ରେଲ ଜଙ୍କ୍‌ସନ୍ ଠାରେ ତାଙ୍କ ସହିତ ଥିବା ବୋମାଟି ଅକସ୍ମାତ୍ ଫୁଟିଗଲା । ବାରାଣସୀରୁ ଆସିଥିବା ତାଙ୍କର ଜଣେ ସାଥୀ ଶ୍ରୀ ମାର୍କଣ୍ଡେୟ

ସିଂହ ରେଳଗାଡ଼ି ଭିତରେ ଘଟଣାସ୍ଥଳରେହିଁ ମୃତ୍ୟୁବରଣ କଲେ । ଏହି ଘଟଣାରେ ମନମୋହନ ଏବଂ ତାଙ୍କର ଅନ୍ୟ ଜଣେ ସହଯୋଗୀ ହରେନ୍ଦ୍ର ବାବୁଙ୍କୁ ସଙ୍ଗେ ସଙ୍ଗେ ଗିରଫ କରାଗଲା । ନାସିକ ଅଦାଲତରେ ବିଚାର ହେଲାପରେ ସେମାନଙ୍କୁ ସାତ ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ଆଦେଶ ଦିଆଗଲା । ଯେଉଁ ଅତ୍ୟାଚାରୀ ସରକାରୀ କର୍ମଚାରୀମାନେ ଜନସାଧାରଣଙ୍କୁ କଠୋର ଭାବରେ ଦମନ କରୁଥିଲେ ଏବଂ ଲୋକପ୍ରିୟ ନେତାମାନଙ୍କ ଉପରେ ନିର୍ମମ ପ୍ରହାର କରୁଥିଲେ, ସେମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବାପାଇଁ ସର୍ଦ୍ଦାର ଭଗତ୍‌ସିଂହ ଆପ୍ରାଣ ଉଦ୍ୟମ ଚଳାଇଲେ ।

ଏହାପରେ ସମାଜବାଦୀ ଏବଂ ଅନ୍ତର୍ଜାତୀୟ ନୀତି ନିର୍ଦ୍ଧାରଣ ପାଇଁ ସମସ୍ତ ପ୍ରକାର ଆୟୋଜନ କରାଗଲା । ଏ ଦୁଇ ନୀତି ଉପରେ ସର୍ଦ୍ଦାର ଭଗତ୍‌ସିଂହଙ୍କର ଦୃଢ଼ ଆସ୍ଥା ଥିଲା । ସୁତରାଂ ଏହାର ପ୍ରତିପାଦନ ପାଇଁ ସେ ବିଶେଷ ଭାବରେ ଜୋର୍ ଦେଇଥିଲେ । ଏ କ୍ଷେତ୍ରରେ ସୁଖ୍‌ଦେବ, ଭଗତ୍ ସିଂହଙ୍କର ସୁଯୋଗ୍ୟ ସହାୟକ ଥିଲେ । ସୁଖ୍‌ଦେବଙ୍କର ବିଚକ୍ଷଣ ବୁଦ୍ଧି ଥିଲା; ତାହା ବ୍ୟତୀତ ସାମ୍ୟବାଦ ବିଷୟରେ ତାଙ୍କର ଗମ୍ଭୀର ଅଧ୍ୟୟନ ମଧ୍ୟ ଥିଲା । ସୁତରାଂ ସୁଖ୍‌ଦେବ୍ ଓ ବିଜୟକୁମାର ସିହ୍ନା ତାଙ୍କ ଦଳର ପ୍ରଧାନ ବିଚାରକ ତଥା ମୁଖ୍ୟ ସିଦ୍ଧାନ୍ତ ନିରୂପକ ହିସାବରେ ଗୃହୀତ ହୋଇଥିଲେ । ବିଜୟକୁମାର ପ୍ରେରଣାଦାୟକ ପ୍ରଚାରପତ୍ର ଏବଂ ସାହିତ୍ୟ ଲେଖିବାରେ ଧୂରନ୍ଧର ଥିଲେ । ସେମାନଙ୍କ ଉଦ୍ୟମରେ ନୂତନ ସମାଜବାଦୀ ଦୃଷ୍ଟିକୋଣକୁ ତାଙ୍କ ଦଳ ଅକୁଣ୍ଠିତ ଭାବରେ ସ୍ୱୀକାର କରିନେଲା । ଏ ପ୍ରକାର ଦୀର୍ଘ ଦୁଇଦିନ ଆଲୋଚନା ହେଲାପରେ ତାଙ୍କ ଦଳର ନାମ ମଧ୍ୟ ବଦଳାଇ ଦିଆଗଲା ।

ଉକ୍ତ ବୈଠକରେ ସର୍ଦ୍ଦାର ଭଗତ୍‌ସିଂହ ସମାଜବାଦୀ କର୍ମକର୍ତ୍ତାର ଭୂମିକା ଗ୍ରହଣ କରି ସମାଜବାଦ ସପକ୍ଷରେ ଅକାଟ୍ୟ ଯୁକ୍ତିମାନ ବାଢ଼ିଥିଲେ । ଫଳରେ ସମାଜବାଦୀ ସିଦ୍ଧାନ୍ତ ଉପରେ ଶେଷରେ ଦଳର କାର୍ଯ୍ୟକ୍ରମ ସ୍ଥିର କରାଗଲା । ପୁଲିସ୍ କର୍ମଚାରୀ ଏବଂ ଅନ୍ୟାନ୍ୟ ଅତ୍ୟାଚାରୀ କର୍ମଚାରୀମାନଙ୍କୁ

ହତ୍ୟା କରିବାପାଇଁ ଯେଉଁ ବିପ୍ଳବୀ ସଦସ୍ୟମାନେ ବୁଲୁଥିଲେ, ସେମାନଙ୍କର ଏ ନୀତି ଉପରେ ମଧ୍ୟ ବିସ୍ତୃତ ଆଲୋଚନା କରାଗଲା । ଶେଷରେ ସ୍ଥିର କରାଗଲା ଯେ, ବ୍ୟକ୍ତିଗତ ଭାବରେ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମରେ ଲିପ୍ତ ନ ରହି ବରଂ ବ୍ୟାପକ ଜନଜାଗରଣ ସହିତ ସାମୂହିକ ଭାବରେ କାର୍ଯ୍ୟକ୍ରମ ଗ୍ରହଣ କରିବା ଉଚିତ । ତାହାହେଲେ କାର୍ଯ୍ୟ କରିବା ପାଇଁ ପ୍ରଚୁର ପ୍ରେରଣା ଏବଂ ତେଜ ମିଳିପାରିବ ।

ସମାଜବାଦୀ କାର୍ଯ୍ୟକ୍ରମ ଗୃହୀତ ହେଲାପରେ ଦଳର ନାମ ପରିବର୍ତ୍ତନ କରାଗଲା । ପୂର୍ବରୁ ଦଳର ନାମ ଥିଲା ହିନ୍ଦୁସ୍ଥାନ ରିପବ୍ଲିକାନ୍ ଏସୋସିଏସନ୍; ଅର୍ଥାତ୍ ହିନ୍ଦୁସ୍ଥାନ ପ୍ରଜାତାନ୍ତ୍ରିକ ସଂଘ । ବର୍ତ୍ତମାନ ଭଗତ୍‌ସିଂହ ଏହାର ନାମ ରଖିଲେ ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ୍ ଏସୋସିଏସନ୍ ଅର୍ଥାତ୍ ହିନ୍ଦୁସ୍ଥାନ ସମାଜବାଦୀ ପ୍ରଜାତାନ୍ତ୍ରିକ ସଂଘ । ଉତ୍ତର ପ୍ରଦେଶର ପ୍ରତିନିଧିମାନେ ପ୍ରଥମରୁ ଏହାର ବିରୋଧ କରୁଥିଲେ । ସେମାନେ କହୁଥିଲେ ଯେ, ରାମପ୍ରସାଦ ବିସ୍ମିଲ୍, ଶଚୀନ୍ଦ୍ର ସାନ୍ୟାଲ୍ ତଥା ଯୋଗେଶ୍ ଚଟର୍ଜୀ ପ୍ରଭୃତି ପ୍ରସିଦ୍ଧ ବିପ୍ଳବୀମାନଙ୍କ ଦ୍ୱାରା ପ୍ରଦତ୍ତ ଦଳର ନାମଟି ଦେଶର ସର୍ବତ୍ର ପରିଚିତ ଓ ପ୍ରତିଷ୍ଠିତ ହୋଇ ସାରିଥିବା ସ୍ଥଳେ ଏହାକୁ ହଠାତ୍ ପରିବର୍ତ୍ତନ କରିବା ଉପଯୁକ୍ତ ହେବନାହିଁ । କିନ୍ତୁ ସର୍ଦ୍ଦାର ଭଗତ୍‌ସିଂହ ଏବଂ ସୁଖ୍‌ଦେବଙ୍କ ଅକାଟ୍ୟ ଯୁକ୍ତି ଫଳରେ ବିରୋଧ କରୁଥିବା ଲୋକଙ୍କର ମୁଖ ବନ୍ଦ ହୋଇଗଲା ଏବଂ ଶେଷରେ ଭଗତ୍‌ସିଂହଙ୍କ ଦ୍ୱାରା ପ୍ରଦତ୍ତ ନାମହିଁ ରହିଲା ।

ଦଳକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରି ରଖିବାକୁ ବୈଠକରେ ସ୍ଥିର କରାଗଲା—ଗୋଟିଏ ଭାଗରେ ଦଳର ସକ୍ରିୟ କର୍ମକର୍ତ୍ତାମାନେ ରହିବେ ଏବଂ ଅନ୍ୟ ଭାଗଟିରେ ଦଳର ସମର୍ଥକମାନେ ରହିବେ । ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବା ତଥା ସାମୂହିକ କାର୍ଯ୍ୟକ୍ରମ କ୍ରମରେ ଜନମତ ସୃଷ୍ଟି କରିବା ଥିଲା ସକ୍ରିୟ କର୍ମକର୍ତ୍ତାମାନଙ୍କର ପ୍ରଧାନ କାର୍ଯ୍ୟ । ସଂଗଠନ ଏହି ଭାଗକୁ 'ହିନ୍ଦୁସ୍ଥାନ୍ ସୋସାଲିଷ୍ଟ୍ ରିପବ୍ଲିକାନ୍ ଆର୍ମୀ' ଅର୍ଥାତ୍ 'ହିନ୍ଦୁସ୍ଥାନ ସମାଜବାଦୀ ପ୍ରଜାତାନ୍ତ୍ରିକ ସେନା' ନାମରେ ନାମିତ କରାଗଲା । ଚନ୍ଦ୍ରଶେଖର

ଆଜାଦଙ୍କୁ ଏହି ସେନାର ସେନାପତି ରୂପେ ମନୋନୀତ କରାଯାଇଥିଲା । ଦଳର ଦ୍ୱିତୀୟ ଭାଗରେ ଥିବା ସମର୍ଥକମାନଙ୍କ ବ୍ୟକ୍ତିଗତ ଦାନଦ୍ୱାରା ଏବଂ ସାଂଗଠନିକ ଚାନ୍ଦା ସଂଗ୍ରହ ଦ୍ୱାରା ଆବଶ୍ୟକ ଅର୍ଥ ସଂଗ୍ରହ କରିବାର ଦାୟିତ୍ୱ ଏବଂ ଦରକାର ପଡ଼ିଲେ ସକ୍ରିୟ କର୍ମକର୍ତ୍ତାମାନଙ୍କୁ ଅସ୍ତ୍ର ଦେବା ଓ ପ୍ରଚାର କରିବାର ଭାର ଦିଆଯାଇଥିଲା । ଦଳର କାର୍ଯ୍ୟକୁ ସୁନିୟନ୍ତ୍ରିତ ଓ ସୁଶୃଙ୍ଖଳିତ କରିବା ପାଇଁ ଏକ କେନ୍ଦ୍ରୀୟ ସମିତି ଗଢ଼ାଯାଇଥିଲା । ଏଥିରେ ଉତ୍ତରପ୍ରଦେଶ, ପଞ୍ଜାବ ଓ ବିହାରରୁ ଦୁଇଜଣ ଲେଖାଏଁ ଏବଂ ରାଜସ୍ଥାନରୁ ଜଣେ ପ୍ରତିନିଧି ଯୋଗ ଦେଇଥିଲେ । ସର୍ଦ୍ଦାର ଭଗତ୍ ସିଂହ ଏହି ସମିତିର ଜଣେ ମୁଖ୍ୟ ଓ ସକ୍ରିୟ ସଦସ୍ୟ ରୂପେ କାର୍ଯ୍ୟ କରିବାକୁ ଲାଗିଲେ । ବିଜୟ କୁମାର ସିହ୍ନାଙ୍କୁ ପ୍ରାଦେଶିକ ସମ୍ପର୍କ ରକ୍ଷା କରିବାର ଦାୟିତ୍ୱ ଦିଆଗଲା । ଦଳର କେନ୍ଦ୍ରୀୟ କାର୍ଯ୍ୟାଳୟ ଝାନ୍ସୀରେ ରଖିବାକୁ ସ୍ଥିର କରାଗଲା । ରାଜସ୍ଥାନର ପ୍ରତିନିଧି ଶ୍ରୀଯୁକ୍ତ କୁନ୍ଦନ୍‌ଲାଲଙ୍କୁ ଏହି କେନ୍ଦ୍ରୀୟ ସମିତିର ମୁଖ୍ୟ ପରିଚାଳକ ରୂପେ ନିଯୁକ୍ତ କରାଗଲା । ଝାନ୍ସି ଆଜାଦ୍‌ଙ୍କର ମଧ୍ୟ ପ୍ରଧାନ କର୍ମସ୍ଥଳୀ ଥିଲା । ସେତେବେଳେ ତାଙ୍କୁ କାକୋରୀ ଷଡଯନ୍ତ୍ର ତଥା ଅନ୍ୟାନ୍ୟ ରାଜନୈତିକ ମାମଲାରେ ଜଡ଼ିତ ଥିବା ଅପରାଧରେ ଫେରାର ଘୋଷଣା କରାଯାଇଥିଲା ।

୧୯୩୧ ମସୀହା ଫେବୃୟାରୀ ମାସ ୨୭ ତାରିଖ ଦିନ ଚନ୍ଦ୍ରଶେଖର ଆଜାଦ୍ ଏଲାହାବାଦ୍‌ର ଆଲ୍‌ଫ୍ରେଡ୍ ପାର୍କରେ ପୁଲିସ୍ ସହିତ ସଶସ୍ତ୍ର ସଂଘର୍ଷରେ ଲିପ୍ତ ଥିବା ସମୟରେ ଶହୀଦ୍ ହୋଇଥିଲେ । ନିଜ ପିସ୍ତଲର ଶେଷଗୁଳି ଫୁଟିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଓ ସାହସର ସହିତ ସେ ପୁଲିସ୍ ବିରୁଦ୍ଧରେ ଲଢ଼ିଥିଲେ । ସୁଖ୍‌ଦେବ୍ ବି ସେତେବେଳେ ଚନ୍ଦ୍ରଶେଖରଙ୍କ ସହିତ ସେ ପାର୍କରେ ଉପସ୍ଥିତ ଥିଲେ । ତାଙ୍କୁ ନିରାପଦରେ ପଳାୟନ କରିବାକୁ ସୁଯୋଗ ଦେବା ପାଇଁ ଚନ୍ଦ୍ରଶେଖର ଏପରି ଭାବରେ ଗୁଳି ଚଳାଇ ସଂଘର୍ଷ କଲେ ଯେ, ତାଙ୍କ ଚତୁର୍ଦ୍ଦିଗରେ ଘେରି ରହିଥିବା ସଶସ୍ତ୍ର ପୁଲିସ୍ ବାହିନୀ ତାଙ୍କ ଛଡ଼ା ଅନ୍ୟନ୍ତ ଦୃଷ୍ଟି ଫେରାଇ ପାରିଲେ ନାହିଁ ; ଫଳରେ ସୁଖ୍‌ଦେବ ସହଜରେ ସଂଘର୍ଷ ସ୍ଥଳରୁ ପଳାଇ ଯାଇ ପାରିଲେ ।

ଗୁଳି ଖାଇ ପଳାଇ ଯିବା ପରେ ତାଙ୍କୁ ଖୋଜିବା ପାଇଁ ଇଂରେଜ ସରକାର ପୁଲିସ୍ ବିଭାଗକୁ ବହୁ ଅର୍ଥ ଦେଇଥିଲେ । ଅନେକେ ହୁଏତ ଜାଣି ନ ଥିବେ ଯେ ବିପ୍ଳବାତ୍ମକ କାର୍ଯ୍ୟ ପାଇଁ ଚନ୍ଦ୍ରଶେଖର ଆଜାଦ୍ ପଣ୍ଡିତ ମୋତିଲାଲ୍ ନେହେରୁଙ୍କ ଠାରୁ ନିୟମିତ ଅର୍ଥ ସାହାଯ୍ୟ ପାଉଥିଲେ । କେବଳ ମୋତିଲାଲ୍ ନେହେରୁ ଯେ ବିପ୍ଳବୀମାନଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିଲେ ତାହା ନୁହେଁ, ଜାତୀୟ କଂଗ୍ରେସର ଅନ୍ୟାନ୍ୟ ସଦସ୍ୟ ମଧ୍ୟ ବିପ୍ଳବୀ ସଂଗଠନକୁ ଉଦାରତାର ସହିତ ଆର୍ଥିକ ସାହାଯ୍ୟ ଦେଉଥିଲେ । ଏଲାହାବାଦ୍‌ର ବାବୁ ପୁରୁଷୋତ୍ତମଦାସ ଟଣ୍ଡନ୍ ବିପ୍ଳବୀମାନଙ୍କୁ ମୁକ୍ତ ହସ୍ତରେ ଅର୍ଥ ଦାନ କରୁଥିଲେ । ବାରାଣସୀର ବାବୁ ଶିବପ୍ରସାଦ ଗୁପ୍ତ ମଧ୍ୟ ସେମାନଙ୍କୁ ସାବଧାନତାର ସହିତ ଅର୍ଥଦାନ କରିବାକୁ ସଙ୍କୋଚ ବୋଧ କରୁ ନ ଥିଲେ । ବଙ୍ଗଳାର ଲେଖକମାନେ ମଧ୍ୟ ଏ ପ୍ରକାର ଦାନ କରିବାରେ ଅଭ୍ୟସ୍ତ ଥିଲେ । ପ୍ରସିଦ୍ଧ ଔପନ୍ୟାସିକ ଶରତଚନ୍ଦ୍ର ଚାଟାର୍ଜୀ ଏ ପ୍ରକାର ଆର୍ଥିକ ସାହାଯ୍ୟ ବହୁବାର କରିଛନ୍ତି । ତାଙ୍କର ପ୍ରଚେଷ୍ଟାରେ କଲିକତାର ତତ୍କାଳୀନ ଏଟର୍ନୀ ତଥା କଂଗ୍ରେସ୍ ନେତା ଶ୍ରୀ ନିର୍ମଳଚନ୍ଦ୍ର ମଧ୍ୟ ବିପ୍ଳବୀ ସଂଗଠନକୁ କିଛି ଆର୍ଥିକ ସାହାଯ୍ୟ କରିଥିଲେ । କେବଳ ଏତିକି ନୁହେଁ, ଖୋଦ୍ ସରକାରଙ୍କସହ କେତେକ ଉଚ୍ଚ ପଦସ୍ଥ ଭାରତୀୟ କର୍ମଚାରୀ ମଧ୍ୟ ଏ ବିପ୍ଳବରେ ପରୋକ୍ଷ ଭାବରେ ଅଂଶ ଗ୍ରହଣ କରିଥିଲେ । ବଙ୍ଗଳାର ଏଡ଼ଭୋକେଟ୍ ଜେନେରାଲ୍ ସାର୍ ଏନ୍. ଏନ୍. ସରକାର ଅନ୍ୟତମ ବିପ୍ଳବୀ ଶ୍ରୀ ଜିତେନ୍ଦ୍ରନାଥ ସାନ୍ୟାଲଙ୍କ ହାତରେ ଅତି ଅପ୍ରତ୍ୟାଶିତ ଭାବରେ ଏକଶତ ଟଙ୍କାର ଏକ ଚେକ୍ ପ୍ରଦାନ କରିଥିଲେ । ଆଗରୁ ବିପ୍ଳବୀ ଦଳର ଜଣେ ସଦସ୍ୟଙ୍କୁ ଦିଆଯାଇଥିବା ଏକ ଚେକ୍‌ରୁ ଠିକଣା ସଂଗ୍ରହ କରି ପୁଲିସ୍ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କୁ ଗିରଫ କରିଥିଲେ ଏବଂ ସେଥିପାଇଁ ନେତାଜୀଙ୍କୁ ବର୍ମା ନିର୍ବାସିତ ହେବାକୁ ପଡ଼ିଥିଲା । ତେଣୁ ଏ ପ୍ରକାର ଆଶଙ୍କାରେ ଆଶଙ୍କିତ ହୋଇ ଶ୍ରୀ ଜିତେନ୍ଦ୍ରନାଥ ସାନ୍ୟାଲ୍ ତତ୍‌କ୍ଷଣାତ୍ ଚେକ୍‌ଟିକୁ ବ୍ୟାଙ୍କରୁ ଭଙ୍ଗାଇ ନେଲେ ।

ଦିଲ୍ଲୀର ତୁଗ୍‌ଲକ୍‌ କିଲ୍ଲାରେ ଆୟୋଜିତ ବୈଠକ ଶେଷ ହେଲାପରେ ଦେଖାଗଲା ଯେ, ସର୍ଦ୍ଦାର ଭଗତ୍‌ ସିଂହ ନବଗଠିତ ବିପ୍ଳବୀ ସଂଗଠନର ଜଣେ ସକ୍ରିୟ ସଦସ୍ୟ ହେବା ସଙ୍ଗେ ସଙ୍ଗେ ଏ ଦଳର ଜଣେ ଶ୍ରେଷ୍ଠ ପ୍ରଚାରକ ମଧ୍ୟ ହୋଇ ସାରିଛନ୍ତି । ଉକ୍ତ ବୈଠକରେ ଏହା ମଧ୍ୟ ସ୍ଥିର ହୋଇ ଥିଲା ଯେ, ଯେଉଁମାନେ ହିନ୍ଦୁସ୍ଥାନ ସମାଜବାଦୀ ପ୍ରଜାତାନ୍ତ୍ରିକ ସେନା ଅନ୍ତର୍ଭୁକ୍ତ ହେବେ ସେମାନଙ୍କୁ ଘରଦ୍ୱାର ଓ ପରିବାର ବର୍ଗଙ୍କୁ ପରିତ୍ୟାଗ କରି ନିଜର ସମସ୍ତ ସମୟ ଓ ଶକ୍ତିକୁ ସଂଗଠନ କାର୍ଯ୍ୟରେ ବିନିଯୋଗ କରିବାକୁ ପଡ଼ିବ । ଧର୍ମ, ସାମ୍ପ୍ରଦାୟିକତା ଓ ବେଶ ଭୂଷାର ଆଡ଼ମ୍ବର ଉପରେ ମଧ୍ୟ ଉକ୍ତ ବୈଠକରେ କଟକଣା କରାଯାଇଥିଲା । ତେଣୁ ସର୍ଦ୍ଦାର ଭଗତ୍‌ ସିଂହଙ୍କୁ ନିଜର ଲମ୍ବା କେଶ ଓ ଶ୍ମଶ୍ରୁ ମଧ୍ୟ କାଟି ଦେବାକୁ ପଡ଼ିଥିଲା ।

କିଛିଦିନ ପରେ ବିପ୍ଳବୀ ସଂଗଠନର କେନ୍ଦ୍ରୀୟ କାର୍ଯ୍ୟାଳୟକୁ ଝାନ୍‌ସୀରୁ ଆଗ୍ରାକୁ ସ୍ଥାନାନ୍ତରିତ କରାଗଲା । ଏଠାରେ ଦୁଇଖଣ୍ଡ ଘର ଭଡ଼ାରେ ନିଆଗଲା ଏବଂ କେତେଜଣ ଯୁବକ ନିଜର ଘରଦ୍ୱାର ଛାଡ଼ି ଏଠାରେ ସବଦା ରହିବାକୁ ଲାଗିଲେ । ଦଳର ଆର୍ଥିକ ଅବସ୍ଥା ଖରାପ ହୋଇଯିବାରୁ ଏହି ଯୁବକମାନେ ଅତି ଦରିଦ୍ର ଭାବରେ ଜୀବନ ଯାପନ କରିବାକୁ ଲାଗିଲେ । ଦୀର୍ଘ ତିନିଦିନ ପର୍ଯ୍ୟନ୍ତ ସେମାନଙ୍କୁ କପେଲେଖାଏଁ ଜଳପାନ କରି ବିନା ଖାଦ୍ୟରେ ଅନେକ ସମୟରେ କାଳଯାପନ କରିବାକୁ ପଡ଼ୁଥିଲା । ଆଗ୍ରାର ଭୀଷଣ ଶୀତରେ ମଧ୍ୟ ନଅ, ଦଶଜଣ ଲୋକ ମାତ୍ର ଦୁଇ, ତିନିଖଣ୍ଡ କମ୍ବଳରେ ଚଳାଯାଉଥିଲେ । ବିଛଣା ବୋଲି ସେମାନଙ୍କର କିଛି ନ ଥିଲା କହିଲେ ଚଳେ । ଏହି ଯୁବକମାନଙ୍କ ମଧ୍ୟରେ ସର୍ଦ୍ଦାର ଭଗତ୍‌ସିଂହ ଅନ୍ୟତମ ଥିଲେ । ନିଜ ଘରେ ଭଗତ୍‌ସିଂହ ମହା ବିଳାସ ବ୍ୟସନ ମଧ୍ୟରେ ରହି ଜୀବନ ଯାପନ କରିବାରେ ଅଭ୍ୟସ୍ତ ଥିଲେ ଏବଂ ପ୍ରତ୍ୟହ ପ୍ରଚୁର କ୍ଷୀରପାନ କରୁଥିଲେ ମଧ୍ୟ ଆଗ୍ରାରେ ଅନ୍ୟମାନଙ୍କ ସହିତ ଦରିଦ୍ର ଜୀବନ ଯାପନ କରିବାକୁ ଟଳେହେଲେ କୁଣ୍ଠା ପ୍ରକାଶ କରି ନ ଥିଲେ । ବରଂ ସେ ଅନ୍ୟ

ସାର୍ଥୀମାନଙ୍କ ସହିତ ହସ ଖୁସିରେ ସମୟ ଅତିବାହିତ କରି ଦୁଃଖ କଷ୍ଟକୁ ଭ୍ରୂକ୍ଷେପ କରୁ ନ ଥିଲେ ।

ସର୍ଦ୍ଦାର ଭଗତ୍‌ସିଂହ ଜଣେ ଅଧ୍ୟବସାୟୀ ଓ ଅଧ୍ୟୟନଶୀଳ ଯୁବକ ଥିବା ବିଷୟ ପୂର୍ବରୁ ଉଲ୍ଲେଖ କରାଯାଇଛି । ଅଧ୍ୟୟନ କରିବାର ଅଭ୍ୟାସ ତାଙ୍କର ଏବେବି ନିଖୁଣ ରହିଥିଲା । ତେଣୁ ସେ ଏ ସମସ୍ତ ଅଭାବ ଅସୁବିଧା ମଧ୍ୟରେ ସୁଦ୍ଧା ବିଭିନ୍ନ ପୁସ୍ତକ ସଂଗ୍ରହ କରି ଆଗ୍ରାରେ ଏକ କ୍ଷୁଦ୍ର କିନ୍ତୁ ଉପାଦେୟ ପୁସ୍ତକାଗାର ପ୍ରତିଷ୍ଠା କରି ସାରିଥିଲେ । ଏଠାରେ ଯେଉଁସବୁ ପୁସ୍ତକ ସଂଗୃହୀତ ହୋଇଥିଲା ସେଗୁଡ଼ିକ ମଧ୍ୟରେ ଅର୍ଥଶାସ୍ତ୍ର, ଟ୍ରେଡ୍ ଇଉନିୟନ୍ ଓ ଟ୍ରେଡ୍ ଡିସ୍‌ପ୍ୟୁଟ୍ ସମ୍ବନ୍ଧୀୟ ପୁସ୍ତକ, ଗୋଲା ବାରୁଦ ଓ ଅନ୍ୟାନ୍ୟ ବିସ୍ଫୋରକ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତ କରିବା ସମ୍ବନ୍ଧରେ ପୁସ୍ତକ ବିଶେଷ ଉଲ୍ଲେଖ ଯୋଗ୍ୟ । ଏହି ପୁସ୍ତକାଗାରରେ ରୁଷିଆର ବିପ୍ଳବୀ ଜନନାୟକମାନଙ୍କର କେତେକ ଜୀବନୀ ମଧ୍ୟ ଥିଲା । ପୁସ୍ତକାଗାରର କଳେବର ବୃଦ୍ଧି କରିବା ପାଇଁ ସେ ନିଜେ ବୁଲି ବୁଲି ତାଙ୍କ ଦଳକୁ ସମର୍ଥନ କରୁଥିବା ସଦସ୍ୟମାନଙ୍କଠାରୁ ପୁସ୍ତକ ଭିକ୍ଷା ଆରମ୍ଭ କରିଦେଇଥିଲେ । ଅଳ୍ପଦିନ ମଧ୍ୟରେ ତାଙ୍କ ଉଦ୍ୟମରେ ଆଗ୍ରାରେ ଗୋଟିଏ ଶ୍ରେଷ୍ଠ ଓ ସୁନ୍ଦର ପୁସ୍ତକାଗାର ପ୍ରତିଷ୍ଠିତ ହୋଇ ସାରିଥିଲା । ସେ ସମୟରେ ଭଗତ୍‌ସିଂହ ଏବଂ ତାଙ୍କ ସାଥୀ ବିପ୍ଳବୀମାନଙ୍କ କାର୍ଯ୍ୟ ସମ୍ବନ୍ଧରେ କେତେକ ବିଦେଶୀ ନେତା ମଧ୍ୟ ଅବହିତ ଥିଲେ । ସେମାନେ ଅନେକଙ୍କ ସହିତ ସମ୍ପର୍କ ରକ୍ଷା କରିବାକୁ ଉତ୍କଣ୍ଠା ପ୍ରକାଶ କରିଥିଲେ । ସୌକତ୍ ଉସ୍‌ମାନୀଙ୍କ ସମ୍ବନ୍ଧରେ ପ୍ରକାଶିତ ଏକ ଲେଖାରୁ ଏହି ତଥ୍ୟ ବିଷୟରେ ସୂଚନା ମିଳେ । ଏହି ଲେଖାରୁ ଜଣାଯାଏ ଯେ, ସୌକତ୍ ଉସ୍‌ମାନୀ ମସ୍କୋରେ ଷ୍ଟାଲିନ୍‌ଙ୍କ ସହିତ ସାକ୍ଷାତ କରି ୧୯୨- ମସିହାରେ ଯେତେବେଳେ ଭାରତ ଫେରି ଆସିବାକୁ ବାହାରିଲେ, ସେତେବେଳେ ସ୍ୱୟଂ ଷ୍ଟାଲିନ୍ ତାଙ୍କୁ ଭଗତ୍‌ସିଂହ ତଥା ବିଜୟକୁମାର ସିହ୍ନାଙ୍କୁ ମସ୍କୋ ଯିବାପାଇଁ ପ୍ରବର୍ତ୍ତାଇବାକୁ ଅନୁରୋଧ କରିଥିଲେ । କିନ୍ତୁ ମିରଟ୍ ଷଡ଼ଯନ୍ତ୍ର ମାମଲାରେ ସୌକତ୍ ଉସ୍‌ମାନୀଙ୍କୁ ଏକା ଏକା ଗିରଫ୍

କରିଯିବାରୁ ଏ ସମ୍ପର୍କ ସ୍ଥାପିତ ହୋଇପାରିଲା ନାହିଁ । ଯାହା ହେଉନା କାହିଁକି ସର୍ଦ୍ଦାର ଭଗତ୍‌ସିଂହ ସମାଜବାଦ ଉପରେ ଅଧ୍ୟୟନ ଏବଂ ଚର୍ଚ୍ଚା ନିରବଚ୍ଛିନ୍ନ ଭାବରେ ଚଳାଇଥିଲେ । ସମାଜବାଦ ଉପରେ ସର୍ଦ୍ଦାର ଭଗତ୍ ସିଂହଙ୍କର ଯେପରି ଗଭୀର ଅଧ୍ୟୟନ ଥିଲା, ବିପ୍ଳବୀ ସଂଗଠନ ମଧ୍ୟରେ କାହାରି ସେପରି ଅଧ୍ୟୟନ ନ ଥିଲା । ସାଧାରଣ ଭାବରେ ସାହିତ୍ୟ ଅଧ୍ୟୟନ କରିବା ସମୟରେ ସେ ଉଲ୍ଲେଖ ଯୋଗ୍ୟ ଅଂଶଗୁଡ଼ିକୁ କଣ୍ଠସ୍ଥ କରି ପକାଉ-ଥିଲେ । ଲାହୋର୍ ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ହୋଇ କାରାବରଣ କରିଥିବା ସମୟରେ ସେ କାରାଗାର ମଧ୍ୟରେ କଣ୍ଠସ୍ଥ କରିଥିବା କବିତାର ଅଂଶଗୁଡ଼ିକୁ ଆବୃତ୍ତି କରି ସାଥୀ ବନ୍ଦୀମାନଙ୍କୁ ଚକିତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଭଗ୍ନ ହୃଦୟରେ ଆଶା, ବିଶ୍ୱାସ ଓ ଉଦ୍ଦୀପନା ଆଣି ଦେଉଥିଲେ ।



## ବିପ୍ଳବର ତୃତୀୟ ପର୍ବ—ସାଣ୍ଡର୍ସ ହତ୍ୟାକାଣ୍ଡ

୧୯୨୯ ମସିହାରେ ଆମ ଦେଶକୁ ସାଇମନ୍ କମିଶନ୍ ଆସିଥିଲା । ଏ କମିଶନରେ କୌଣସି ଭାରତୀୟଙ୍କୁ ସଭ୍ୟ ହିସାବରେ ଗ୍ରହଣ କରାଯାଇ ନ ଥିବାରୁ ଭାରତର ଚାରିଆଡ଼େ 'ସାଇମନ୍ ଫେରିଯାଅ' ଆନ୍ଦୋଳନ ଚାଲିଥିଲା । ସେହିବର୍ଷ ଡାକ୍ତର ଅନ୍‌ସାରୀଙ୍କ ଅଧ୍ୟକ୍ଷତାରେ ମାନ୍ଦ୍ରାଜଠାରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ବସିଥିଲା । ଏହି ଅଧିବେଶନରେ ସାଇମନ୍ କମିଶନର ଶାସନ ସଂସ୍କାରକୁ ପ୍ରତ୍ୟାଖ୍ୟାନ କରାଗଲା ଏବଂ ଭାରତରେ ତତ୍କାଳୀନ ସମସ୍ତ ରାଜନୈତିକ ଦଳ ଏକତ୍ର ମିଳିତ ହୋଇ ପଣ୍ଡିତ ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଗୋଟିଏ ଶାସନ-ତନ୍ତ୍ର

ପ୍ରଣୟନ କରିବା ପାଇଁ ସ୍ଥିର କରିଥିଲେ । ଜବାହାରଲାଲ୍ ନେହେରୁଙ୍କ ଦ୍ୱାରା ଆନୀତ 'ପୂର୍ଣ୍ଣ ସ୍ୱାଧୀନତା' ପ୍ରସ୍ତାବ ମଧ୍ୟ ଏହି ଅଧିବେଶନରେ ଗୃହୀତ ହୋଇଥିଲା । ସାଇମନ୍ କମିଶନ୍ ଭାରତରେ ପଦାର୍ପଣ କରିବା ମାତ୍ରେ ଚତୁର୍ଦ୍ଦିଗରେ ବିକ୍ଷୋଭ ପ୍ରଦର୍ଶିତ ହେବାକୁ ଲାଗିଲା । ବହୁ ଯୁବକ ପୁଲିସ୍‌ର ଲାଠି ମାଡ଼ରେ ହତାହତ ହେଲେ ଏବଂ ଆଉ କେତେକ କାରାବରଣ କଲେ । ପଣ୍ଡିତ ମଦନମୋହନ ମାଳବ୍ୟ, ଲାଲା ଲାଜପତରାୟ ପ୍ରଭୃତି ନେତୃବୃନ୍ଦ ଏହି ବିକ୍ଷୋଭକାରୀମାନଙ୍କର ନେତୃତ୍ୱ ନେଇଥିଲେ । ପୁଲିସ୍ ଲାଠି ଆଘାତରେ ଶୋଚନୀୟ ଭାବରେ ଆହତ ହୋଇ ମାତ୍ର କେଇଦିନ ମଧ୍ୟରେ ଲାଲା ଲାଜ୍‌ପତ ରାୟ ମୃତ୍ୟୁମୁଖରେ ପଡ଼ିଥିଲେ । ଏହି ସମୟରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଭାରତର ସମସ୍ତ ରାଜନୈତିକ ଦଳକୁ ନେଇ ଏକ ସଭା ଅନୁଷ୍ଠିତ ହୋଇଥିଲା । ସେ ସଭାରେ 'ନେହେରୁ ରିପୋର୍ଟର' ଗୋଟିଏ ଖସଡ଼ା ପ୍ରସ୍ତୁତ କରାଗଲା । ୧୯୨୮ ମସିହାରେ ପଣ୍ଡିତ ମୋତିଲାଲ୍ ନେହେରୁଙ୍କ ସଭାପତିତ୍ୱରେ କଲିକତାରେ କଂଗ୍ରେସ ଅଧିବେଶନ ଆରମ୍ଭ ହେଲା । ଏହି କଂଗ୍ରେସର ଅଭ୍ୟର୍ଥନା କମିଟିର ସଭାପତି ଥିଲେ ଦେଶପ୍ରିୟ ଯତୀନ୍ଦ୍ରମୋହନ ସେନ୍‌ଗୁପ୍ତ । ସେଠାରେ ପଣ୍ଡିତ ଜବାହାରଲାଲ୍ ନେହେରୁ ଓ ସୁଭାଷଚନ୍ଦ୍ର ବୋଷ୍‌ଙ୍କ ନେତୃତ୍ୱରେ ଗଠିତ 'ପ୍ରଗତିଶୀଳ ଦଳ' ସହିତ 'ପ୍ରାଚୀନ ଦଳର' ବିରୋଧ ଉପସ୍ଥିତ ହେଲା । ମହାତ୍ମା ଗାନ୍ଧୀ ଏ ବିରୋଧର ମୀମାଂସା କରି 'ନେହେରୁ ରିପୋର୍ଟ'କୁ ଗ୍ରହଣ କରିବା ନିମିତ୍ତ ସମସ୍ତ ସଦସ୍ୟଙ୍କୁ ଅନୁରୋଧ କଲେ । ଶେଷରେ ଏହା ଗୃହୀତ ହେଲା ।

ଭାରତର ବିଭିନ୍ନ ସହରରେ ଭ୍ରମଣ କଲାପରେ ସାଇମନ୍ କମିଶନ୍ ୧୯୨୮ ମସିହା ଅକ୍ଟୋବର ମାସ ୨ ତାରିଖ ଦିନ ଲାହୋର୍ ଆସିବା କଥା ଥିଲା । ଏହି କମିଶନର ବିରୋଧ କରିବା ପାଇଁ ଲାହୋର୍ ସହରରେ ବିରାଟ ଆୟୋଜନ କରାଯାଇଥିଲା । ଏ ପ୍ରକାର ଆନ୍ଦୋଳନାତ୍ମକ କାର୍ଯ୍ୟରୁ ଜନସାଧାରଣଙ୍କୁ ବିରତ କରିବା ପାଇଁ ସମଗ୍ର ଲାହୋର ସହରରେ ସରକାରଙ୍କ ତରଫରୁ ୧୪୪ ଧାରା ଆଇନ୍ ଜାରି କରାଗଲା ଏବଂ ପୁଲିସ୍ ବାହିନୀଙ୍କୁ ଯେ କୌଣସି ପ୍ରକାରେ ଆନ୍ଦୋଳନ ବନ୍ଦ କରିବାକୁ କଡ଼ା

ଆଦେଶ ଦିଆଗଲା । ଫଳରେ ପୁଲିସ୍ ଏବଂ ବିକ୍ଷୋଭକାରୀଙ୍କ ମଧ୍ୟରେ ସଂଘର୍ଷ ହେଲା । ବିକ୍ଷୋଭକାରୀଙ୍କ ପୁରୋଭାଗରେ ରହିଥିବା ବୃଦ୍ଧ ପଞ୍ଜାବକେଶରୀ ଲାଲା ଲଜପତ ରାୟଙ୍କ ଉପରେ ପ୍ରଥମେ ପୁଲିସ୍ ଲାଠି ଚାଳନା କଲେ । ଶୋଚନୀୟ ଲାଠି ପ୍ରହାର ଫଳରେ ୧୯୨୮ ମସିହା ନଭେମ୍ବର ମାସ ୧୭ ତାରିଖ ଦିନ ତାଙ୍କର ମୃତ୍ୟୁ ଘଟିଲା । ମୃତ୍ୟୁ ପୂର୍ବରୁ ଲାଲାଜୀ ପୁଲିସ୍ ଅତ୍ୟାଚାରର ଘୋର ନିନ୍ଦା କରି ଯାଇଥିଲେ । ପୁଲିସର ନିର୍ମମ ଲାଠି ପ୍ରହାରରେ ଯେ ଲାଲାଜୀଙ୍କର ମୃତ୍ୟୁ ଘଟିଥିଲା, ଏଥିରେ ଆଉ କାହାର ସନ୍ଦେହ ରହିଲା ନାହିଁ । ତେଣୁ ତାଙ୍କର ମୃତ୍ୟୁ ପାଇଁ ସମସ୍ତେ ଏକ ସ୍ୱରରେ ପୁଲିସ୍ ବିଭାଗକୁହିଁ ଦାୟୀ କରିଥିଲେ । ସହାୟକ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ସାଣ୍ଡର୍ସ ସାହେବ ଏହି ଲାଠି ଚାଳନା ଆଦେଶ ଦେଇଥିଲେ । ତେଣୁ ଲୋକଙ୍କର ଏହି ଧାରଣା ହେଲା ଯେ, ସାଣ୍ଡର୍ସ ସହେବହିଁ ଲାଲାଜୀଙ୍କର ପ୍ରକୃତ ହତ୍ୟାକାରୀ ।

ଲାଲାଜୀଙ୍କ ମୃତ୍ୟୁର ଠିକ୍ ମାସକ ପରେ ଅର୍ଥାତ୍ ୧୯୨୮ ମସିହା ଡିସେମ୍ବର ୧୭ ତାରିଖ ଦିନ ପୁଲିସ୍ ଅଫିସ୍ ସାମନାରେ ସାଣ୍ଡର୍ସ ସାହେବଙ୍କୁ ହତ୍ୟା କରାଗଲା । ଆକ୍ରମଣକାରୀ ଆତତାୟୀମାନଙ୍କୁ ଅନୁସରଣ କରୁଥିବା ସିପାହୀ ଚନ୍ନନ୍ ସିଂହଙ୍କୁ ମଧ୍ୟ ସେହିଦିନ ହତ୍ୟା କରାଯାଇଥିଲା । ଏହାପରେ ଆକ୍ରମଣକାରୀମାନେ କୁଆଡ଼େ ଲୁଚିଗଲେ ତାର କୌଣସି ପତ୍ତା ମିଳିଲା ନାହିଁ । ଏ ଘଟଣା ପରଦିନ ପୁଲିସ୍ ପ୍ରାତଃକାଳରେ ଜାଣିବାକୁ ପାଇଲେ ଯେ, ସହରର ଗୋଟିଏ ସ୍ଥାନରେ କାନ୍ଥ ଦେହରେ ଏକ ପ୍ରଚାରପତ୍ର ବଡ଼ ଏବଂ ଲାଲ ଅକ୍ଷରରେ ଛପାହୋଇ ମରାଯାଇଛି । ଏହି ପ୍ରଚାର ପତ୍ରର ଶୀର୍ଷକ ଥିଲା, "ହିନ୍ଦୁସ୍ଥାନ ସୋସାଲିଷ୍ଟ୍ ରିପବ୍ଲିକାନ୍ ଆର୍ମି" । ଏହି ଶୀର୍ଷକ ତଳେ ମୋଟା ମୋଟା ଅକ୍ଷରରେ ଲେଖାଥିଲା, "ସାଣ୍ଡର୍ସଙ୍କୁ ହତ୍ୟା କରାଯାଇଛି; ଲାଲାଜୀଙ୍କ ମୃତ୍ୟୁର ପ୍ରତିଶୋଧ ନିଆଯାଇଛି । ଲକ୍ଷ ଲକ୍ଷ ନରନାରୀଙ୍କ ଆଦର ଏବଂ ଶ୍ରଦ୍ଧାର ପାତ୍ର ନେତାଙ୍କୁ ଜଣେ ସାଧାରଣ ପୁଲିସ୍ କର୍ମଚାରୀ ଜେ: ପି: ସାଣ୍ଡର୍ସଙ୍କ ଦ୍ୱାରା ହତ୍ୟା କରିବା ଦେଶ ପକ୍ଷରେ ଏକ ଘୋର ଅପମାନ । ନୂତନ ଯୁବଭାରତ ଉପରେ ଏହି କଳଙ୍କକୁ ଧୋଇଦେବାର ଧରିବନ୍ତି

ଦାୟିତ୍ୱ ଥିଲ" । ଏହା ହିଁ ସାଣ୍ଡର୍ସଙ୍କ ହତ୍ୟାକାଣ୍ଡର ସଂକ୍ଷିପ୍ତ ଇତିହାସ । ଲାହୋର୍ ଷଡ଼ଯନ୍ତ୍ର ସମ୍ବନ୍ଧରେ ସରକାରଙ୍କ ତରଫରୁ ଗୁପ୍ତ ତଥ୍ୟ ସଂଗ୍ରହ କରୁଥିବା ଶ୍ରୀ ଜୟଗୋପାଲ୍‌ଙ୍କ ବର୍ଣ୍ଣନାରୁ ଏହି ଘଟଣାର ପୃଷ୍ଠଭୂମି ଏ ପ୍ରକାର ଥିବାର ଜଣାପଡ଼େ ।

ଲାଲା ଲଜପତରାୟଙ୍କ ମୃତ୍ୟୁଠାରୁ ହିଁ ପଞ୍ଜାବର ବିପ୍ଳବୀ ସଂଗଠନ ଲାଲାଜୀଙ୍କ ଉପରେ ଲାଠି ପ୍ରହାର କରିଥିବା ଏବଂ ଏହାଦ୍ୱାରା ତାଙ୍କ ମୃତ୍ୟୁ ପାଇଁ ଦାୟୀ ହୋଇଥିବା ପୁଲିସ କର୍ମଚାରୀମାନଙ୍କୁ ସମୂଳେ ବିନାଶ କରିଦେବା ପାଇଁ ଚିନ୍ତା କରୁଥିଲା । ଏଥିରେ ବିପ୍ଳବୀମାନଙ୍କର ଦୁଇଟି ଉଦ୍ଦେଶ୍ୟ ଥିଲା, ଯଥା—ଲୋକପ୍ରିୟ ଆନ୍ଦୋଳନକୁ ହିଂସାତ୍ମକ ଆନ୍ଦୋଳନରେ ପରିଣତ କରିବା ଏବଂ ଲାଲାଜୀଙ୍କ ହତ୍ୟାକୁ ଭାରତୀୟମାନେ ନୀରବତାର ସହିତ ଯେ ସହିଗଲେ ନାହିଁ, ତାହା ସାରା ବିଶ୍ୱକୁ ଜଣାଇଦେବା । ଭାରତରେ ଯେ ଏକ ସକ୍ରିୟ ବିପ୍ଳବୀ ସଂଗଠନ ଅଛି, ତାହା ସାରା ଦୁନିଆକୁ ଜଣାଇଦେବା ମଧ୍ୟ ସାଣ୍ଡର୍ସ ହତ୍ୟାକାଣ୍ଡର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା । ଏହା ବ୍ୟତୀତ ସର୍ଦ୍ଦାର ଭଗତ୍‌ସିଂହ ଏବଂ ଶିବରାମ୍ ରାଜଗୁରୁ ଦୁଇଜଣ ମିଳିତ ଭାବରେ ଗୁଳି ଚଳାଇ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ସ୍କଟ୍ ସାହେବଙ୍କୁ ହତ୍ୟା କରିବା ପାଇଁ ମଧ୍ୟ ପ୍ରସ୍ତୁତ ହୋଇଥିଲେ ଏବଂ ଲାହୋର୍-ଷଡ଼ଯନ୍ତ୍ର ଘଟଣାରେ ଫେରାର୍ ହୋଇଥିବା ଚନ୍ଦ୍ରଶେଖର ଆଜାଦ୍ ସେମାନଙ୍କୁ ଯଥାସାଧ୍ୟ ସାହାଯ୍ୟ ଦେବାକୁ ପ୍ରସ୍ତୁତ ଥିଲେ ।

ଶ୍ରୀ ବିଶ୍ୱନାଥ ବୈଶମ୍ପାୟନଙ୍କ ଦ୍ୱାରା ଲିଖିତ 'ଅମର ଶହୀଦ୍ ଚନ୍ଦ୍ରଶେଖର ଆଜାଦ୍' ନାମକ ପୁସ୍ତକରୁ ଜଣାଯାଏ ଯେ, ଲାଲା ଲଜପତରାୟ ଲାଠି ପ୍ରହାରରେ ଆହତ ହେବା ଦିନ ସନ୍ଧ୍ୟା ସମୟରେ ସାଇମନ୍ କମିଶନ୍‌କୁ ବିରୋଧ କରିବା ନିମନ୍ତେ ଜାତୀୟ କଂଗ୍ରେସ ଆନୁକୂଲ୍ୟରେ ଏକ ବିରାଟ ସଭାର ଆୟୋଜନ ହୋଇଥିଲା । ଏହି ସଭାରେ ସ୍ୱୟଂ ଲାଲାଜୀ ଏକ ଗୁରୁତ୍ୱପୂର୍ଣ୍ଣ ଭାଷଣ ଦେଇ କହିଥିଲେ, "ଆଇ ଡିକ୍ଲେୟାର୍ ଦ ବ୍ଲୋକ୍ ହାର୍ଲଡ୍ ଏଟ୍ ମି ଟୁଡେ ୱିଲ୍ ବି ଦ ଲାଷ୍ଟ ନେଲ୍ସ ଇନ୍ ଦ କଫିନ୍ ଅଫ୍ ଦ ବ୍ରିଟିଶ୍ ରୁଲ୍ ଇନ୍ ଇଣ୍ଡିଆ ।

**( I declare the blows hurled at me will be the last nails in the Coffin of the British rule in India )**'' ଅର୍ଥାତ୍ "ମୁଁ ଆଜି ଘୋଷଣା କରୁଛି ଯେ ସରକାରଙ୍କ ଦ୍ୱାରା ମୋ ଉପରେ ଯେଉଁ ପ୍ରହାର ଦିଆଯାଉଛି, ସେହି ପ୍ରହାର ନିଶ୍ଚିତ ଭାବରେ ଅବିଳମ୍ବେ ଭାରତରେ ଇଂରେଜ ଶାସନର ଅବସାନ ଘଟାଇବ ।''

ଲାଲାଜୀଙ୍କ ମୃତ୍ୟୁ ୧୯୨୮ ମସିହା ନଭେମ୍ବର ୧୭ ତାରିଖରେ ହେବା ବିଷୟ ଆଗରୁ ଉଲ୍ଲେଖ କରାଯାଇଛି । ସେଦିନ ଲାହୋର୍ ସହରରେ ଏକ ଶୋକସଭା ଆହୂତ ହୋଇଥିଲା । ସେ ସଭାରେ ଭାଷଣ ଦେଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସ୍ୱର୍ଗୀୟ ଚିତ୍ତରଞ୍ଜନ ଦାସଙ୍କ ପତ୍ନୀ ଶ୍ରୀମତୀ ବାସନ୍ତୀ ଦେବୀ ଥିଲେ ଅନ୍ୟତମ । ସେ ଗଭୀର ଭାବାବିଷ୍ଟ ହୋଇ କହିଥିଲେ, "ଲାଲାଜୀଙ୍କ ଚିତାଗ୍ନି ନିର୍ବାପିତ ହେବା ପୂର୍ବରୁ ଦେଶର କୌଣସି ନା କୌଣସି ଯୁବକ ଏ ଜାତୀୟ ଅପମାନର ପ୍ରତିଶୋଧ ନିଶ୍ଚୟ ନେବ ।'' ନଭେମ୍ବର ୧୮ ତାରିଖ ଦିନ ଲାଲାଜୀଙ୍କର ମରଶରୀର ସତ୍କାର ନିମିତ୍ତ ବାହାରିବା ସମୟରେ ପ୍ରାୟ ଅଢ଼େଇ ଲକ୍ଷ ଲୋକ ଶବ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ସମସ୍ତଙ୍କ ମୁହଁରେ ଦୁଃଖ ଏବଂ ପ୍ରତିହିଂସାର ଆଭାସ ଲାଗିରହିଥିଲା । ସେମାନେ 'ବ୍ରିଟିଶ୍ ଶାସନ ମୁର୍ଦ୍ଦାବାଦ୍' 'ଲାଲାଜୀ ଜିନ୍ଦାବାଦ୍' ଏବଂ ''ଖୁନ୍‌କା ବଦଲା ଖୁନ୍‌ସେ' ଇତ୍ୟାଦି ସ୍ଲୋଗାନ୍ ଦେଇ ଶ୍ମଶାନ ଆଡ଼କୁ ଅଗ୍ରସର ହେଉଥିଲେ । ଠିକ୍ ସେହି ସମୟରେ ଚନ୍ଦ୍ରଶେଖର ଆଜାଦ୍, ସର୍ଦ୍ଦାର ଭଗତ୍‌ସିଂହ ଏବଂ ତାଙ୍କର ଅନ୍ୟ ସାଥୀମାନେ ଲାଲାଜୀଙ୍କର ହତ୍ୟାକାରୀମାନଙ୍କ ପ୍ରାଣ ନେବା ଉଦ୍ଦେଶ୍ୟରେ ଏୟାର୍ ରାଇଫଲରୁ ଗୁଳି ଚଳାଇ ଲକ୍ଷ୍ୟ ଅଭ୍ୟାସ କରୁଥିଲେ । ଲାଲାଜୀଙ୍କ ମୃତ୍ୟୁ ପୂର୍ବରୁ ହିଁ କୁନ୍ଦନଲାଲ୍ ଦିଲ୍ଲୀରୁ ଲାହୋର୍‌ରେ ଆସି ପହଞ୍ଚି ସାରିଥିଲେ । ୧୯୨୮ ମସିହା ଡିସେମ୍ବର ୮ ଏବଂ ୯ ତାରିଖ ଦିନ ମୋଜଙ୍ଗ୍ ହାଉସ୍‌ରେ ବିପ୍ଳବୀମାନଙ୍କର ଏକ ବୈଠକ ବସିଥିଲା । ଏ ବୈଠକରେ ଲାଲାଜୀଙ୍କ ହତ୍ୟାକାରୀମାନଙ୍କୁ ନିଃଶେଷ କରିବା ପାଇଁ ଯୋଜନାମାନ ନିଖୁଣ ଭାବରେ ପ୍ରସ୍ତୁତ କରାଯାଇଥିଲା ।

ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ସ୍କଟ୍ ସାହେବ ଜନତାକୁ ଭୟଙ୍କର ପୁଲିସ୍ ଷ୍ଟେସନ୍ ସ୍କୁଲର ଚେମ୍ବର୍ ମଧ୍ୟରୁ ଆଦୌ ବାହାରକୁ ବାହାରୁ ନ ଥିଲେ । ସେଥିପାଇଁ ପ୍ରଥମେ ସହକାରୀ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ସାଣ୍ଡର୍ସ ସାହେବଙ୍କୁ ହତ୍ୟା କରିବାକୁ ସ୍ଥିର କରାଗଲା । ଏହି ଉଦ୍ଦେଶ୍ୟରେ ଚନ୍ଦ୍ରଶେଖର ଆଜାଦ୍ ତାଙ୍କର ସହଯୋଗୀମାନଙ୍କୁ ଲାହୋର୍ ବାହାରୁ ଡକାଇ ଆଣିଥିଲେ । ଭଗବାନ୍ ଦାସ ମାହୌର୍ ଏ ଡକରା ପାଇ ଗ୍ୱାଲିୟରରୁ ଆସିଲେ ଏବଂ ସାଣ୍ଡର୍ସ ହତ୍ୟାକାଣ୍ଡ ଶେଷ ହେଲା ପର୍ଯ୍ୟନ୍ତ ସେ ଲାହୋର୍‌ରେ ହିଁ ରହିଥିଲେ । ହତ୍ୟା କରିବା ପୂର୍ବରୁ ସ୍ୱୟଂ ଚନ୍ଦ୍ରଶେଖର ଆଜାଦ୍ ଏଥିପାଇଁ ଉପଯୁକ୍ତ ସ୍ଥାନ ଓ ସମୟ ନିରୂପଣ କରିବାକୁ ଲାଗିପଡ଼ିଲେ । ପୁଲିସ୍ ଷ୍ଟେସନ୍ ପାଖରେ ଚନ୍ଦ୍ରଶେଖର, ଭଗତ୍‌ସିଂହ ତଥା ତାଙ୍କର ଅନ୍ୟାନ୍ୟ ସହଯୋଗୀ-ମାନେ ଅତି ସନ୍ତର୍ପଣରେ ବୁଲିବାକୁ ଲାଗିଲେ । ସାଣ୍ଡର୍ସ ସାହେବ ମୋଟର ସାଇକେଲ୍‌ରେ ପୁଲିସ୍ ଷ୍ଟେସନରୁ ବାହାରିବା ସଙ୍ଗେ ସଙ୍ଗେ ରାଜଗୁରୁ ଜୟଗୋପାଳଙ୍କଠାରୁ ଇସାରା ପାଇ ପ୍ରଥମେ ସାଣ୍ଡର୍ସଙ୍କ ଉପରକୁ ଗୁଳି ଚଳାଇଲେ । ସାଣ୍ଡର୍ସ ସାହେବ ଆହତ ହୋଇ ତତ୍‌କ୍ଷଣାତ୍ ମୋଟର ସାଇକେଲ୍ ସହ ତଳେ ପଡ଼ିଗଲେ । ମୁହଁରୁ ତାଙ୍କର ଅଳ୍ପ ଅଳ୍ପ ରକ୍ତ ବାହାରୁଥିଲା । ଭଗତ୍‌ସିଂହ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଦୌଡ଼ିଯାଇ ତାଙ୍କ ଉପରକୁ ଆଉ କେତୋଟି ଗୁଳି ଚଳାଇ ସାରିଲା ପରେ ପରୀକ୍ଷା କରି ଦେଖିଲେ ଯେ, ଲାଠି ଚାଳନା ଭଳି କଠୋର ଓ ବର୍ବର ଆଦେଶ ଦେବା ପାଇଁ ସାଣ୍ଡର୍ସ ସାହେବ ଆଉ ଇହଧାମରେ ନାହାନ୍ତି ।

ସାଣ୍ଡର୍ସ ସାହେବଙ୍କୁ ହତ୍ୟା କରିବା ନିମିତ୍ତ ସେମାନଙ୍କର ସମସ୍ତ ଯୋଜନା ସୁବିଚାରିତ ଥିଲା । ଏଥିପାଇଁ ସେମାନେ ପ୍ରସ୍ତୁତ ଥିଲେ । ଚନ୍ଦ୍ରଶେଖର, ରାଜଗୁରୁ ଏବଂ ଭଗତ୍‌ସିଂହ ଏହି ତିନିଜଣ ଯୁବକ ଘଟଣା-ସ୍ଥଳରେ ପୁଲିସ୍ ସହିତ ଭୀଷଣ ସଂଘର୍ଷ କରିବା ପାଇଁ ମଧ୍ୟ ଆଗରୁ ପ୍ରସ୍ତୁତ ଥିଲେ । ଏଥିପାଇଁ ସେମାନେ ମୁଖ୍ୟତଃ ବଙ୍ଗଳାର ସାହସୀ ଯୁବକ ଯତୀନ୍ଦ୍ରନାଥ ମୁଖାର୍ଜି ( ବାଘା ଯତୀନ୍ )ଙ୍କ ବିପ୍ଳବୀ ଜୀବନର ଅମର କାହାଣୀରୁ ପ୍ରଚୁର ପ୍ରେରଣା ଲାଭ କରିଥିଲେ ।

ଏଠାରେ ଯତୀନ୍ଦ୍ରନାଥ ମୁଖାର୍ଜୀଙ୍କ ବିପ୍ଳବୀ ଜୀବନର ଏକ ସଂକ୍ଷିପ୍ତ ସୂଚନା ଦେବା ଏକାନ୍ତ ଆବଶ୍ୟକ । ପ୍ରଥମ ମହାଯୁଦ୍ଧ ଆରମ୍ଭ ହେବା ଦିନଠାରୁ ଯତୀନ୍ଦ୍ରନାଥ ମୁଖାର୍ଜୀ ବଙ୍ଗଳାର ତତ୍କାଳୀନ ବିପ୍ଳବୀ ନେତା ରାସବିହାରୀ ବୋଷ ଏବଂ ଶଚୀନ୍ଦ୍ର ସାନ୍ୟାଲଙ୍କ ସହଯୋଗରେ ଜାହାଜ ଦ୍ୱାରା ବିଦେଶରୁ ଅସ୍ତ୍ରଶସ୍ତ୍ର ଆଣିବାର ବନ୍ଦୋବସ୍ତ କରୁଥିଲେ । ସେମାନଙ୍କ ସହିତ ଆଉ ଚାରିଜଣ ବିପ୍ଳବୀ ଯୁବକ ମଧ୍ୟ ଥିଲେ । ସେମାନଙ୍କ ବୟସ ମାତ୍ର ସତର ବା ଅଠର ଥିଲା । ସେମାନେ ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ରହି ଦୁର୍ଦ୍ଧର୍ଷ ବ୍ରିଟିଶ ସରକାରଙ୍କ କର୍ମଚାରୀମାନଙ୍କ ସହିତ ବିଭିନ୍ନ ସ୍ଥାନରେ ଲଢ଼ୁଥିଲେ । ସେଠାରେ ଟେଗାର୍ଟ ସାହେବଙ୍କ ନେତୃତ୍ୱରେ ସମସ୍ତ ପୁଲିସ୍ ବାହିନୀ ସର୍ବଦା ସେମାନଙ୍କୁ ଅନୁସରଣ କରୁଥିଲେ । ଗୋଟିଏ ସ୍ଥାନରେ ସେମାନେ ମୁହାଁମୁହିଁ ଭାବରେ ପରସ୍ପରକୁ ଭେଟିଲେ । ସେତେବେଳେ ଅନ୍ୟ ଚାରିଜଣ ସହଯୋଗୀ ଯୁବକ ଚିତ୍ତପ୍ରିୟ, ନୀରେନ୍, ମନୋରଞ୍ଜନ ଓ ଜ୍ୟୋତିଷ ମଧ୍ୟ ଯତୀନ୍‌ଙ୍କ ସହିତ ରହିଥିଲେ । ୧୯୧୫ ମସିହା ସେପ୍ଟେମ୍ବର ୯ ତାରିଖ ଦିନ ପୁଲିସ୍‌ବାହିନୀ ସହିତ ଏମାନଙ୍କର ଭୀଷଣ ସଂଘର୍ଷ ଆରମ୍ଭ ହୋଇଥିଲା । ଯତୀନ୍ ମୁଖାର୍ଜୀ ଘଟଣା ସ୍ଥଳରେ ଆହତ ହୋଇ ପଡ଼ିଲେ । ଚିତ୍ତପ୍ରିୟ ଲଢ଼ୁ ଲଢ଼ୁ ପ୍ରାଣ ହରାଇଲେ । ବାଲେଶ୍ୱରର ତତ୍କାଳୀନ ସଦର ଡାକ୍ତରଖାନାରେ ଭର୍ତ୍ତି ହେବାର ମାତ୍ର ଦୁଇଦିନ ପରେ ଯତୀନ୍ ମୁଖାର୍ଜୀଙ୍କର ମୃତ୍ୟୁ ହୋଇଗଲା । ନୀରେନ୍ ଓ ମନୋରଞ୍ଜନଙ୍କୁ ଫାଶୀ ଏବଂ ଜ୍ୟୋତିଷଙ୍କୁ ନିର୍ବାସନ ଦଣ୍ଡ ଦିଆଗଲା । ସୁଦୂର ଆଣ୍ଡାମାନ୍ ଦ୍ୱୀପରେ ନିର୍ବାସନ-ଯାତନା ସହି ନ ପାରି ଜ୍ୟୋତିଷ ପାଗଳ ହୋଇ ଯାଇଥିଲେ । ଏହାପରେ ଭାଗଲପୁର ଜେଲ୍‌ରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଭଗତ୍‌ସିଂହ ଏବଂ ତାଙ୍କର ସହଯୋଗୀମାନେ ଅମର ଶହୀଦ୍ ଯତୀନ୍ଦ୍ରନାଥ ମୁଖାର୍ଜୀଙ୍କ ବିପ୍ଳବୀ ଜୀବନରୁ ଏପରି ପ୍ରେରଣା ଲାଭ କରିଥିଲେ ଯେ, ସେମାନେ ସାଣ୍ଡର୍ସ ସାହେବଙ୍କୁ ହତ୍ୟା କଲାପରେ ପୁଲିସ୍ ବାହିନୀ ସହିତ ପ୍ରାଣମୂର୍ଚ୍ଛା ସଶସ୍ତ୍ର ସଂଘର୍ଷରେ ଲିପ୍ତ ରହିବାକୁ ସ୍ଥିର କରିଥିଲେ । ଏଥିରେ ସେମାନେ ପ୍ରାଣ ବିସର୍ଜନ କରିବାକୁ ମଧ୍ୟ ଦେଲେହେଲେ କୁଣ୍ଠିତ ନ ଥିଲେ ।

ସେମାନେ ଭାବିଥିଲେ ଯେ, ଏପରି ଦୁଃସାହସିକ କାର୍ଯ୍ୟ କରିବା ଦ୍ୱାରା ଦେଶର ବହୁ ଯୁବକ ଅନୁପ୍ରାଣିତ ହୋଇ ବିପ୍ଳବୀ ଦଳରେ ଯୋଗ ଦେବେ ।

କିନ୍ତୁ ସେମାନଙ୍କର କଳ୍ପନା କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ । ପ୍ରଥମତଃ ସେମାନେ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ସ୍କଟ୍‌ଙ୍କ ବଦଳରେ ତାଙ୍କର ସହକାରୀ ସାଣ୍ଡର୍ସ ସାହେବଙ୍କୁ ହତ୍ୟା କଲେ । ଦ୍ୱିତୀୟତଃ ଏ ଘଟଣାରେ କୌଣସି ପୁଲିସ୍ ତାଙ୍କୁ ଅନୁସରଣ କଲେ ନାହିଁ । ପୁଲିସ୍ ଥାନାରୁ ଫର୍ଣ୍ଣ ନାମକ କେବଳ ଜଣେ ପୁଲିସ୍ କର୍ମଚାରୀ ଏ ଘଟଣା ପରେ ବାହାରକୁ ବାହାରି ଆସିଥିଲେ । କିନ୍ତୁ ନିକଟରେ ଉପର୍ଯ୍ୟୁପରି ଦୁଇଟି ଗୁଳିର ଶବ୍ଦ ଶୁଣି ସେ ଭୀତତ୍ରସ୍ତ ହୋଇପଡ଼ିଲେ ଏବଂ ସଙ୍ଗେ ସଙ୍ଗେ ସର୍ପ ଯେପରି ବିପଦ ସୂଚନା ପାଇଲେ ତତ୍‌କ୍ଷଣାତ୍ ବିଲରେ ପ୍ରବେଶ କରେ ସେହିପରି ତାଙ୍କ ଚେମ୍ବର୍ ମଧ୍ୟରେ ପ୍ରବେଶ କଲେ । ଚନ୍ଦ୍ରଶେଖର ଆଜାଦ୍ ଛାତ୍ରାବାସ ନିକଟରେ ଛିଡ଼ାହୋଇ ସମସ୍ତ ଘଟଣା ଦେଖୁଥିଲେ । ଭଗତ୍‌ସିଂହ ଏବଂ ରାଜଗୁରୁ ଯେ ସାଣ୍ଡର୍ସ ସାହେବଙ୍କ ଉପରେ ସେମାନଙ୍କର ସମସ୍ତ ଗୁଳି ନିଃଶେଷ କରିଦେଇଥିଲେ, ଏହା ଚନ୍ଦ୍ରଶେଖରଙ୍କୁ ବେଶ୍ ଜଣାଥିଲା । ନିଜର କାର୍ଯ୍ୟ ଶେଷ କଲାପରେ ଭଗତ୍‌ସିଂହ ଏବଂ ରାଜଗୁରୁ ବିଜୟ ଉଲ୍ଲାସରେ ଡି. ଏ. ଭି. କଲେଜ ଛାତ୍ରାବାସ ଆଡ଼କୁ ଫେରିଲାବେଳେ ପୂର୍ବୋକ୍ତ ଚନ୍ଦନ୍ ସିଂହ ନାମକ ଜଣେ ପୁଲିସ୍ କର୍ମଚାରୀ ତାଙ୍କୁ ଦ୍ରୁତ ଅନୁସରଣ କରୁଥିଲା । ପୁଲିସ୍ କର୍ମଚାରୀ ଜଣକ ଭଗତ୍‌ସିଂହଙ୍କୁ ଧରିବା ପାଇଁ ଦୌଡ଼ିବାକୁ ଆରମ୍ଭ କରିଦେଇଥିଲା । ଏହା ଜାଣିପାରି ଭଗତ୍‌ସିଂହ ଓ ରାଜଗୁରୁ ଉଭୟ ପ୍ରାଣପଣେ ଦୌଡ଼ିବାକୁ ଆରମ୍ଭ କରିଦେଲେ । ଏ ଦୌଡ଼ରେ ଭଗତ୍‌ସିଂହ ସବୁଠାରୁ ଆଗରେ ଥିଲେ । ଏହାଙ୍କ ପରେ ରାଜଗୁରୁ ଏବଂ ସବୁଠାରୁ ପଛରେ ଥିଲେ ଚନ୍ଦନ୍ ସିଂହ । କିଛି ସମୟ ପରେ ଚନ୍ଦନ ସିଂହ ଦୁଇ ବନ୍ଧୁଙ୍କ ମଝିକୁ ଚାଲି ଆସିଲା । ମାତ୍ର କେତେ ସେକେଣ୍ଡ ମଧ୍ୟରେ ଚନ୍ଦନ ଭଗତ୍‌ସିଂହଙ୍କୁ କାବୁ କରିବାର ଯଥେଷ୍ଟ ସମ୍ଭାବନା ଥିଲା । ଭଗତ୍‌ସିଂହ ଚନ୍ଦନ୍ ହାତରେ ଧରା ପଡ଼ିଥିଲେ ନିଶ୍ଚିତ ଭାବରେ ଫାଶୀଦଣ୍ଡ ପାଇଥା'ନ୍ତେ । ତେଣୁ ସେ

ଜନକଙ୍କ ମଧ୍ୟରେ ଯେଉଁ ଦୌଡ଼ ଦେଉଥିଲେ ତାହା ନିଶ୍ଚିତରେ ଜୀବନ-ମରଣ ଦୌଡ଼ ଥିଲା । ଚନ୍ଦନ୍ ସିଂହ ଜଣେ ଶକ୍ତିଶାଳୀ ଯୁବକ ଥିଲେ । କେଶ୍ ଖାଲି ହାତରେ ତାହାର ଗତିରୋଧ କରିବା ରାଜଗୁରୁ କିମ୍ବା ଭଗତ୍‌-ସିଂହ କାହାରି ପକ୍ଷରେ ସମ୍ଭବ ନ ଥିଲା । ଏହି ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ଚନ୍ଦ୍ରଶେଖର ଆଜାଦ୍ ନିଜର ପିସ୍ତଲ ଧରି ବାହାରିପଡ଼ିଲେ । ଚନ୍ଦନ୍‌ଙ୍କର ଗତିରୋଧ କରିବା ପାଇଁ ସେ ପ୍ରଥମେ ତାହା ଆଡ଼କୁ ଲକ୍ଷ୍ୟ କରି ଗୋଟିଏ ଗୁଳି ଫୁଟାଇଲେ । ଏ ଗୁଳି ଚନ୍ଦନ୍‌ର ଜାନୁ ବିଦ୍ଧ କଲା । ତଥାପି ସେ ଦୌଡ଼ୁଥାଏ । ଚନ୍ଦ୍ରଶେଖରଙ୍କ ଦ୍ୱିତୀୟ ଗୁଳି ଯେତେବେଳେ ଚନ୍ଦନ୍‌ର ଉଦର ବିଦ୍ଧ କଲା, ସେତେବେଳେ ସେ ସେହିଠାରେ ହିଁ ଟଳିପଡ଼ିଲା । ଏହା ଚନ୍ଦ୍ରଶେଖରଙ୍କ ଭୀଷଣ ଜର୍ମାନୀ ପିସ୍ତଲର ଗୁଳି ଥିବାରୁ ଏଥିରେ ନିସ୍ତାର ପାଇବା ଚନ୍ଦନ୍ ପକ୍ଷରେ ସମ୍ଭବ ହେଲନାହିଁ ।

ଚନ୍ଦ୍ରଶେଖରଙ୍କ ଲକ୍ଷ୍ୟ ଯେ ଅବ୍ୟର୍ଥ ଥିଲା, ତାହା ଉକ୍ତ ଘଟଣାରୁ ବେଶ୍ ଜଣାପଡ଼େ । ଉନନଜଣ ଲୋକ ଦୌଡ଼ୁଥିବା ସମୟରେ ଜଣକୁ ଲକ୍ଷ୍ୟ କରି ଗୁଳି ଚଳାଇବା ଅତି ଦୁରୁହ ବ୍ୟାପାର ହୋଇଥିଲେ ମଧ୍ୟ ଚନ୍ଦ୍ରଶେଖରଙ୍କର ସେ ଆତ୍ମବିଶ୍ୱାସ ଥିଲା । ତାହା ନ ହୋଇଥିଲେ ଗୁଳି କାଳେ ତାଙ୍କ ଦୁଇ ସାଥୀଙ୍କ ଶରୀର ବିଦ୍ଧ କରିବ, ଏହି ଆଶଙ୍କାରେ ସେ ଗୁଳି ଚଳାଇବାରୁ ନିଶ୍ଚିତ ଭାବରେ ବିରତ ହୋଇଥା'ନ୍ତେ । ଲକ୍ଷ୍ୟସ୍ଥଳରେ ଗୁଳି ବଜାଇବାରେ ତାଙ୍କର ଏପରି ଅଭ୍ୟାସ ଥିଲା ଯେ, ସେ ଅନ୍ଧକାର ମଧ୍ୟରେ କେବଳ ଶବ୍ଦ ଶୁଣି ଶବ୍ଦଭେଦୀ ବାଣ ସଦୃଶ ଲକ୍ଷ୍ୟସ୍ଥଳରେ ଗୁଳି ବଜାଇ ପାରୁଥିଲେ ।

ଏ ଘଟଣା ପରେ ଭଗତ୍‌ସିଂହ, ଚନ୍ଦ୍ରଶେଖର ଓ ରାଜଗୁରୁ ପୁଣି ଡ଼ି. ଏ. ଭି. କଲେଜର ବୋର୍ଡ଼ିଂ ହାଉସ୍‌କୁ ଫେରିଗଲେ । ଏହା ରେଳ ଷ୍ଟେସନ ପାଖରୁ ଅଳ୍ପ ଦୂରରେ ଥିଲା । ସେଠାରେ ମଧ୍ୟ ସେମାନେ ପୁଲିସ୍‌କୁ ଅନୁସରଣ କରିବା ଆଶାରେ ଅପେକ୍ଷା କରି ରହିଲେ । କିନ୍ତୁ କେହି ନ ଆସିବାରୁ ସେମାନେ ଦୁଇଖଣ୍ଡି ସାଇକେଲ ଚଢ଼ି ମୋଜଙ୍ଗ ହାଉସ୍‌କୁ

ପଳାଇଗଲେ । ସେଥିପାଇଁ ସେ ଟିଏ ସ୍ଥଳରେ ଲୋକମାନଙ୍କଠାରୁ ସେମାନଙ୍କୁ କିଛି ସମ୍ବନ୍ଧ ପାଇଁ ସାଇକେଲଟି ୨ ଭଡ଼ା ନେବାକୁ ପଡ଼ିଥିଲା । ଡ଼. ଏ. ଭି. କଲେଜର ବୋର୍ଡ଼ିଂ ହାଉସ୍ ଗୁଡ଼ିଯିବା ସଙ୍ଗେ ସଙ୍ଗେ ଏକ ଶକ୍ତିଶାଳୀ ପୁଲିସ୍ ବାହିନୀ ସେଠାରେ ଆସି ପହଞ୍ଚିଲେ । ସେମାନେ ବୋର୍ଡ଼ିଂ ହାଉସ୍‌ର ସମ୍ପୂର୍ଣ୍ଣ ଘରରେ ପ୍ରବେଶ କରି ତାହା ମଧ୍ୟରେ ତନ୍ନ ତନ୍ନ କରି ଖୋଜାଖୋଜି ଆରମ୍ଭ କରିଦେଲେ । ଲାହୋର୍ ସହରରୁ ବାହାରକୁ ଯିବାପାଇଁ ଥିବା ସମସ୍ତ ବାଟରେ କଡ଼ା ପୁଲିସ ଜଗୁଆଳୀ ମୁତୟନ କରାଯାଇଥିଲା ଏବଂ ସହର ବାହାରକୁ ଯାଉଥିବା ଏବଂ ବାହାରୁ ସହରକୁ ଆସୁଥିବା ସମସ୍ତ ଲୋକଙ୍କୁ, ବିଶେଷତଃ ଯୁବକମାନଙ୍କୁ ଉତ୍ତମରୂପେ ଯାଞ୍ଚ କରିବାର ବ୍ୟବସ୍ଥା ମଧ୍ୟ କରାଗଲା । ପୁଲିସ ବିଭାଗର ଏତେ ତତ୍ପରତା ଓ ସାବଧାନତା ସତ୍ତ୍ୱେ ତିନିଜଣଯାକ ବିପ୍ଳବୀ ନିରାପଦରେ ଲାହୋର ସହର ବାହାରକୁ ପଳାଇଯାଇ ପାରିଥିଲେ ।

ଏପରି ବିପଦ ସମୟରେ ଲାହୋର୍ ସହରରୁ କିପରି ପଳାଇଯିବାକୁ ହେବ ତାର ସମ୍ପୂର୍ଣ୍ଣ ଯୋଜନା ଭଗତ୍‌ସିଂହ ହିଁ ନିଜେ କରିଥିଲେ । ସେ ଅତ୍ୟନ୍ତ ସାହସୀ ଓ ବିଚକ୍ଷଣ ବୁଦ୍ଧିମାନ ଥିଲେ । ସେ ଜଣେ ସରକାରୀ କର୍ମଚାରୀଙ୍କ ବେଶ ଧାରଣ କରି ଗୋଟିଏ ନୂତନ ନାମ ଗ୍ରହଣ କଲେ । ଏହି ନୂତନ ନାମକୁ ସେ ନିଜର ଟ୍ରଙ୍କ ଓ ସୁଟକେଶ ଦେହରେ କାଗଜରେ ଲେଖି ମାରିଦେଲେ । ତାହାପରେ ସେ ଜଣେ ସୁନ୍ଦରୀ ତରୁଣୀଙ୍କ ସହିତ ଲାହୋର୍‌ର ସେଣ୍ଟ୍ରାଲ ରେଲ ଷ୍ଟେସନରେ ରେଲଗାଡ଼ିର ପ୍ରଥମ ଶ୍ରେଣୀ ଡବାକୁ ନିଃଶଙ୍କରେ ଚଢ଼ିଗଲେ । ସେଠାରେ ସାଣ୍ଡର୍ସ ସାହେବଙ୍କ ହତ୍ୟାକାରୀଙ୍କୁ ଧରିବା ପାଇଁ ଯେଉଁ ସ୍ୱତନ୍ତ୍ର ପୁଲିସ କର୍ମଚାରୀ ଥିଲେ ସେମାନଙ୍କ ଆଖିରେ ଧୂଳି ଦେଇ ସର୍ଦ୍ଦାର୍ ଭଗତ୍‌ସିଂହ ଲାହୋର୍ ସହରରୁ ବାହାରି ପଳାଇଲେ ।

ଭଗତ୍‌ସିଂହଙ୍କ ସହିତ ଯେଉଁ ମହିଳା ଜଣକ ଲାହୋର୍ ସେଣ୍ଟ୍ରାଲ ରେଲ ଷ୍ଟେସନରେ ଗାଡ଼ିରେ ଚଢ଼ିଯାଇଥିଲେ ସେ ହେଉଛନ୍ତି ବିପ୍ଳବୀଙ୍କର

ଭଗବତୀ ଚରଣଙ୍କ ଧର୍ମପତ୍ନୀ ଶ୍ରୀମତୀ ଦୁର୍ଗା ଦେବୀ । ସୁଖଦେବ ନାମେ ଶ୍ରୀମତୀ ଦୁର୍ଗାଦେବୀଙ୍କୁ ସର୍ଦ୍ଦାର ଭଗତ୍‌ସିଂହଙ୍କ ସହିତ ଲାହୋର୍ ସହର ବାହାରକୁ ଯିବା ନିମିତ୍ତ ଅନୁରୋଧ କରିଥିଲେ । ଦୁର୍ଗାଦେବୀ ସୁଖଦେବଙ୍କ ଠାରୁ ସମସ୍ତ ଘଟଣା ଶୁଣିସାରିଲା ପରେ ତାଙ୍କ ଯୋଜନାକୁ ସ୍ୱାଗତ ଜଣାଇଥିଲେ । ସ୍ୱାମୀଙ୍କ ଭଳି ଶ୍ରୀମତୀ ଦୁର୍ଗା ଦେବୀ ଜଣେ ତ୍ୟାଗୀ ଓ ସାହସିନୀ ମହିଳା ଥିଲେ । ସେ କ୍ଷେତ୍ରରେ ସର୍ଦ୍ଦାର ଭଗତ୍‌ସିଂହଙ୍କ ସହିତ ଯିବା ବିପଦ୍‌ଜନକ ଜାଣି ମଧ୍ୟ ସେ ତାଙ୍କୁ ସାହାଯ୍ୟ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ । ପୁଲିସ ସହିତ ଭଗତ୍‌ସିଂହଙ୍କର ସଶସ୍ତ୍ର ସଂଘର୍ଷ ଅବଶ୍ୟମ୍ଭାବୀ ଜାଣି ସୁଦ୍ଧା ଶ୍ରୀମତୀ ଦୁର୍ଗାଦେବୀ ତାଙ୍କୁ ନିରାପଦରେ ଲାହୋର୍ ସହରରୁ ବାହାରକୁ ବାହାର-ଯିବାରେ ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ । ଆହୁରି ମଜାର କଥା ହେଉଛି ସେ ସେତେବେଳେ ଦୁର୍ଗାଦେବୀଙ୍କ ସହିତ ତାଙ୍କର ଦୁଇବର୍ଷର ଶିଶୁପୁତ୍ର ଶଚୀ ମଧ୍ୟ ସାଙ୍ଗରେ ଥିଲେ । ପୁତ୍ରପ୍ରତି ବିପଦ ଆସିପାରେ, ଏ ଆଶଙ୍କା ମଧ୍ୟ ତାଙ୍କୁ ଅଭିଭୂତ କରିପାରି ନ ଥିଲା । ଏହିମତ ଭାବରେ ସର୍ଦ୍ଦାର୍ ଭଗତ୍‌ସିଂହ, ଶ୍ରୀମତୀ ଦୁର୍ଗାଦେବୀ ଏବଂ ତାଙ୍କ ଦୁଇବର୍ଷର ଶିଶୁପୁତ୍ର ଶଚୀ ନିରାପଦରେ ଯାଇ କଲିକତାରେ ପହଞ୍ଚିଲେ । ସେଠାରେ ଦୁର୍ଗା-ଦେବୀଙ୍କଠାରୁ ତାର ବାର୍ତ୍ତା ପାଇ ତାଙ୍କ ସ୍ୱାମୀ ଭଗବତୀ ଚରଣ ଏବଂ ସୁଶୀଳା ଦେବୀ ସେମାନଙ୍କୁ ସ୍ୱାଗତ କରିବା ପାଇଁ ଷ୍ଟେସନକୁ ଆସିଥିଲେ । ଶ୍ରୀମତୀ ଦୁର୍ଗାଦେବୀ ଏ ତାରବାର୍ତ୍ତା ଲକ୍ଷ୍ନୌ ଠାରୁ ସୁଶୀଳା ଦେବୀଙ୍କ ପାଖକୁ ପଠାଇଥିଲେ :

ସେଠାରେ ସର୍ଦ୍ଦାର ଭଗତ୍‌ସିଂହଙ୍କର ଜଣେ ଅଙ୍ଗରକ୍ଷୀ ଦରକାର ପଡ଼ୁଥିଲେ । ଭଗତ୍‌ସିଂହ ସେତେବେଳେ ସାହେବୀ ପୋଷାକଧାରୀ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ହିସାବରେ ଆଡ଼ମ୍ବର ସହିତ ଚାଲିଥିଲେ । ଅର୍ଦ୍ଦଳୀ ପୋଷାକଧାରୀ ଜଣେ ଲୋକ ହାତରେ ଟିଫିନ୍‌କେରିୟର୍‌ଟିଏ ଧରି ସାହେବଙ୍କ ପାଖେ ପାଖେ ଚାଲିଥିଲେ । ଏ ଅର୍ଦ୍ଦଳୀଜଣକ ବିପ୍ଳବୀଦଳର ସବୁଠାରୁ ଦକ୍ଷ ଲକ୍ଷ୍ୟ ଭେଦକାରୀ ରାଜଗୁରୁ ବ୍ୟତୀତ ଆଉ କେହି ନୁହନ୍ତି ।

ଯେ କୌଣସି ପରିସ୍ଥିତିର ମୁକାବିଲା କରିବା ପାଇଁ ଯେମାନେ ସେ ସର୍ବଦା ପ୍ରସ୍ତୁତ ଥିଲେ ତାହା ନିଃସନ୍ଦେହରେ କୁହାଯାଇପାରେ ।

ଲାହୋର୍ ସହରରୁ ପଳାୟନ କରିବା ପାଇଁ ଚନ୍ଦ୍ରଶେଖର ଆଜାଦ ଏକ କୌତୂହଳପୂର୍ଣ୍ଣ ଉପାୟ ଅବଲମ୍ବନ କରିଥିଲେ । ସେ ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ରୂପ ଧାରଣ କରି ବୃଦ୍ଧ ସ୍ତ୍ରୀ ପୁତ୍ରମାନଙ୍କୁ ବାରାଣସୀ ତୀର୍ଥ କରାଇ ନେବାର ବନ୍ଦୋବସ୍ତ କଲେ । ଏହି ଯାତ୍ରୀମାନଙ୍କ ଗହଣରେ ଶିଖା ଚୈତନଧାରୀ ବ୍ରାହ୍ମଣ ବେଶରେ ସେ ନିରାପଦରେ ବାରାଣସୀ ପଳାଇ-ଗଲେ ।



## ବିପ୍ଳବର ଚତୁର୍ଥ ପର୍ବ—ବଙ୍ଗଳାର ବିପ୍ଳବୀଙ୍କ ସହିତ ସମ୍ପର୍କ

ଭଗତ୍ ସିଂହଙ୍କୁ ପୁଲିସ ପୂର୍ବରୁ ଥରେ ଗିରଫ କରିଥିବାରୁ ସାଣ୍ଡର୍ସ ହତ୍ୟାକାଣ୍ଡ ପରେ ଗୁପ୍ତଚର ବିଭାଗ ପ୍ରଥମେ ତାଙ୍କୁହିଁ ସନ୍ଦେହ କରିବାକୁ ଲାଗିଲେ । ସୁତରାଂ ପୁଲିସ୍ ଭଗତ ସିଂହଙ୍କୁ ଖୋଜିବାକୁ ଲାଗିଲେ । କିନ୍ତୁ ଉଚ୍ଚ ନ୍ୟାୟାଳୟର ପୂର୍ବରୁ ତାଙ୍କର ଜାମିନ ଆଦେଶ ରଦ୍ଦ କରି ଦିଆଯାଇ ଥିବାରୁ ସେଠାରେ ତାଙ୍କର କୌଣସି ଖବର ମିଳିଲା ନାହିଁ । ପୁଲିସ ଦେଶର ଚାରିଆଡ଼େ ଭଗତ ସିଂହଙ୍କୁ ଖୋଜିବାକୁ ଲାଗିଲେ । ତାଙ୍କୁ ଯେ କୌଣସି ସ୍ଥାନରେ ପାଇଲେ ତତ୍‌କ୍ଷଣାତ୍ ଗିରଫ କରିବା ପାଇଁ ଉଚ୍ଚ କର୍ତ୍ତୃପକ୍ଷ ପୁଲିସ କର୍ମଚାରୀମାନଙ୍କୁ ଗୁପ୍ତ ନିର୍ଦ୍ଦେଶ ଦେଇଥିଲେ । ତାଙ୍କୁ ଖୋଜିବା ପାଇଁ କେତେଜଣ ପୁଲିସ କର୍ମଚାରୀଙ୍କୁ ସ୍ୱତନ୍ତ୍ର ଭାବରେ ନିଯୁକ୍ତ

କରାଯାଉଥିଲା । ପୁଲିସ୍ ବିଭାଗର ଯେଉଁ ସିପାହୀମାନେ ଭଗତ ସିଂହଙ୍କୁ ଚିହ୍ନିଥିଲେ ସେମାନଙ୍କୁ ବିଶିଷ୍ଟ କେନ୍ଦ୍ର ଜାଗା ମାନଙ୍କରେ ମୁତୟନ କରାଗଲା । ରେଲବାଇ କର୍ମଚାରୀଙ୍କୁ ମଧ୍ୟ ଏଥିରେ ସାହାଯ୍ୟ କରିବା ପାଇଁ କଡ଼ା ନିର୍ଦ୍ଦେଶ ଦିଆଯାଇ ଥିଲା ।

ପୁଲିସ୍ ବିଭାଗର ଏପରି କଠୋର ବ୍ୟବସ୍ଥା ସତ୍ତ୍ୱେ ଦୁର୍ଦ୍ଧର୍ଷ ଭଗତ ସିଂହ ନିଃଶଙ୍କୋଚରେ ଏଣେ ତେଣେ ବୁଲୁଥିଲେ । ସାଣ୍ଡର୍ସ ସାହେବଙ୍କ ହତ୍ୟା ଏବଂ ଏ ଉପଲକ୍ଷେ ଛପାଯାଇଥିବା ପ୍ରଚାରପତ୍ର ପାଇଁ ବିପ୍ଳବୀ ଅନୁଷ୍ଠାନର ପ୍ରତିଷ୍ଠା ଏବଂ ଖ୍ୟାତି ବିଭିନ୍ନପରିମାଣରେ ବଢ଼ି ଯାଇଥିଲା । ତତ୍‌କାଳୀନ ବିଦ୍ୟାର୍ଥୀମାନଙ୍କ ଉପରେ ଏ ଅନୁଷ୍ଠାନର ପ୍ରଭାବ ଯଥେଷ୍ଟ ପଡ଼ିଥିଲା । ଫଳରେ ଅନୁଷ୍ଠାନର ଆର୍ଥିକ ଅବସ୍ଥା କ୍ରମଶଃ ସୁଧୁରିଗଲା । ସାଣ୍ଡର୍ସ ହତ୍ୟାକାଣ୍ଡ ଦିନ ଲାହୋର ସହରର ଏକ ଗୃହରେ ବାସ କରୁଥିବା କେତେ ଜଣ ବିପ୍ଳବୀ କର୍ମୀଙ୍କ ପାଖରେ ରାତିରେ ଟିକିଏ ଆଲୁଅ ଜାଳିବା ପାଇଁ ଅର୍ଥ ନ ଥିଲା । କିନ୍ତୁ ଏ ଘଟଣା ଘଟିବାର ମାତ୍ର କେତେଦିନ ଭିତରେ ଅପ୍ରତ୍ୟାଶିତ ଭାବରେ ଯେଉଁ ଆର୍ଥିକ ସାହାଯ୍ୟ ଆସିଲା, ସେଥିରେ ସେମାନଙ୍କର ସମସ୍ତ ଗୁରୁଜିଣା ସହଜରେ ମେଣ୍ଟିଗଲା । ପର୍ଯ୍ୟାପ୍ତ ପରିମିତ ଆର୍ଥିକ ସାହାଯ୍ୟ ଫଳରେ ବିପ୍ଳବୀ ଯୁବକମାନେ ଆବଶ୍ୟକତା ଅନୁଯାୟୀ ଇଉରୋପୀୟ ପୋଷାକ ପରିଚ୍ଛଦ ଧାରଣ କରି ପ୍ରଥମ ଶ୍ରେଣୀ ରେଳ-ଯାତାୟତ କରି ପାରିଲେ ।

ସାଣ୍ଡର୍ସ ହତ୍ୟାକାଣ୍ଡ ପରେ ବିପ୍ଳବୀମାନଙ୍କ ପ୍ରତି ଦେଶର ଅଗଣିତ ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କର ସଦ୍‌ଭାବ ଓ ସହାନୁଭୂତି ଏପରି ବଢ଼ିଥିଲା ଯେ, ଇଂରେଜ କର୍ତ୍ତୃପକ୍ଷ ଏଥିପାଇଁ ବିଶେଷ ଚିନ୍ତିତ ହୋଇ ପଡ଼ିଲେ । ଭାରତୀୟ ଗୁପ୍ତଚର ବିଭାଗର ତତ୍‌କାଳୀନ ନିର୍ଦ୍ଦେଶକ ସାର୍ ଡାନିଏଲ୍ ପେଟ୍ରିସ୍‌ଙ୍କ ଦ୍ୱାରା ୧୯୨୯ ମସିହା ଜୁନ୍ ମାସ ୧୯ ତାରିଖ ଦିନ ପ୍ରେରିତ ରିପୋର୍ଟ୍‌ରୁ ଏ ଉକ୍ତିର ସତ୍ୟାସତ୍ୟ ବିଷୟରେ ପୂର୍ଣ୍ଣ ବିବରଣୀ ମିଳେ । ଏ ରିପୋର୍ଟରେ ଉଲ୍ଲେଖ କରାଯାଇଥିଲା—"କଂଗ୍ରେସ୍, ସ୍ୱରାଜ୍ୟ ପାର୍ଟି

ଅଥବା ଇଣ୍ଡିପେଣ୍ଡେଣ୍ଟ୍ ପାର୍ଟିର ଆନ୍ଦୋଳନ ଦ୍ୱାରା ଶିକ୍ଷିତମାନଙ୍କ ମଧ୍ୟରେ ବ୍ରିଟ୍-ବିରୋଧୀ ମତବାଦ ଉଗ୍ର ହୋଇଉଠୁ । ଉଦାହରଣ ସ୍ୱରୂପ ଜଣେ ଅତି ଅଭିଜ୍ଞ ତଥା ଉଚ୍ଚ ପଦସ୍ଥ ଅବସର ପ୍ରାପ୍ତ ଶିଖ୍ କର୍ମଚାରୀଙ୍କ କହିବା ଅନୁସାରେ ସାଣ୍ଡର୍ସଙ୍କ ହତ୍ୟାକାରୀମାନଙ୍କ ପ୍ରତି ମାଜିଷ୍ଟ୍ରେଟ୍ ପରି ଦାୟିତ୍ୱ ପୂର୍ଣ୍ଣ ସରକାରୀ ପଦବୀରେ ଅଧିଷ୍ଠିତ ଥିବା ସୁଶିକ୍ଷିତ ହିନ୍ଦୁମାନଙ୍କର ଅଗାଧ ସହାନୁଭୂତି ଦେଖି ସେ ଆଚମ୍ବିତ ହୋଇଥିଲେ ।" ଦାନଏଲ୍ ପେଟ୍ରିଙ୍କ ଆଉ ଏକ ରିପୋର୍ଟରୁ ଜଣାଯାଏ ଯେ, ଭାରତରୁ ବ୍ରିଟିଶ ଶାସନ ଲୋପ କରି ଭାରତୀୟ ଶାସନ ପ୍ରତିଷ୍ଠା କରିବା ବିପ୍ଳବୀ ସଙ୍ଗଠନର ମୂଳ ଉଦ୍ଦେଶ୍ୟ ଥିଲା । ଏହି ଲକ୍ଷ୍ୟ ହାସଲ କରିବା ପାଇଁ ସେମାନେ ନାନାପ୍ରକାର ସୁବିଚାରିତ ପନ୍ଥା ଅନୁସରଣ କରୁଥିଲେ । ସେ ବିପ୍ଳବୀ ଯୁବକମାନେ ଏପରି ପୂର୍ଣ୍ଣ କମ୍ୟୁନିଷ୍ଟ ମତାବଲମ୍ବୀ ନ ଥିଲେ । ଯେଉଁମାନଙ୍କୁ କି ଏନାର୍କିଷ୍ଟ କୁହାଯାଇପାରେ । ସେମାନଙ୍କର ଗୋଟିଏ ପାଦ ବିପ୍ଳବୀ ଦଳରେ ଏବଂ ଆଉ ଗୋଟିଏ ପାଦ କମ୍ୟୁନିଷ୍ଟ ଦଳରେ ଥିଲା । ରାଷ୍ଟ୍ରୀୟ ପ୍ରଜାତାନ୍ତ୍ରିକ ଆଦର୍ଶ ଅପେକ୍ଷା ସମାଜବାଦୀ ପ୍ରଜାତାନ୍ତ୍ରିକ ଆଦର୍ଶରୁ ସେମାନେ ଅଧିକ ପ୍ରେରଣ ପାଉଥିଲେ । ରାଷ୍ଟ୍ରୀୟ ଆଦର୍ଶହିଁ ଏ ପର୍ଯ୍ୟନ୍ତ ବିପ୍ଳବୀ ଦଳର ସମସ୍ତ ପ୍ରେରଣାର ଉତ୍ସ ଥିଲା ।

ଏବେ ସର୍ଦ୍ଦାର ଭଗତ୍ ସିଂହ ଏଲାହାବାଦ୍ ଆସି ଅଜୟ ଘୋଷଙ୍କ ସହିତ ମେକ୍‌ଡୋନାଲ୍‌ଡ୍ ହିନ୍ଦୁ ବୋର୍ଡିଂ ହାଉସରେ ଅବସ୍ଥାନ କରୁଥିଲେ ଏହି ଅଜୟ ଘୋଷ୍ ପରେ ଲାହୋର ଷଡ଼ଯନ୍ତ୍ରରେ ଅଭିଯୁକ୍ତ ହୋଇଥିଲେ ଏବଂ ଭାରତୀୟ କମ୍ୟୁନିଷ୍ଟ୍ ପାର୍ଟିର ଜେନେରାଲ୍ ସେକ୍ରେଟେରୀ ହୋଇଥିଲେ । ବିପ୍ଳବୀ ଦଳର ଜଣେକ ସମର୍ଥକ ଶ୍ରୀ ଜିତେନ୍ଦ୍ରନାଥ ସାନ୍ୟାଲ୍‌ଙ୍କ ଠାରୁ ଅର୍ଥ ସାହାଯ୍ୟ ପାଇବା ଲାଗି ଭଗତ୍ ସିଂହ ଏଲାହାବାଦ୍ ଆସିଥିଲେ । ବିପ୍ଳବୀ ଦଳର ସମସ୍ତ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ସେତେବେଳେ ଏହି ଯୁବକମାନେ ଦଳର ସମର୍ଥକମାନଙ୍କ ଠାରୁ ଅର୍ଥ ସଂଗ୍ରହ କରୁଥିଲେ । ସେ ସମୟରେ ବିପ୍ଳବୀମାନଙ୍କ ପ୍ରତି ଜନସାଧାରଣଙ୍କର ଯଥେଷ୍ଟ ସହାନୁଭୂତି ଥିଲା । ସେଥିପାଇଁ ସବୁ ସ୍ଥାନରୁ ସେମାନେ ସକ୍ରିୟ ସହଯୋଗ ପାଉଥିଲେ ।

ଜତେନ୍ଦ୍ରନାଥ ସାନ୍ୟାଲ୍ ସେମାନଙ୍କୁ ଅନେକ ସମୟରେ ପିସ୍ତଲ୍ ଓ ଗୁଳି ଇତ୍ୟାଦି ମାରଣାସ୍ତ୍ର ମଧ୍ୟ ଦାନ କରୁଥିଲେ । ଉତ୍ତର ପ୍ରଦେଶର ବିପ୍ଳବୀ ନେତା ଶଚୀନ୍ଦ୍ର ନାଥ ସାନ୍ୟାଲ୍, ମୌଲନା ସୌକତ୍ ଅଲ୍ଲି, ତଥା ଏଲ୍ଲାହାବାଦ୍‌ର ପଣ୍ଡିତ କୃଷ୍ଣକାନ୍ତ ମାଳବ୍ୟଙ୍କ ଠାରୁ ଦାନ ସ୍ୱରୂପ ରିଭଲ୍‌ଭର ପାଇଥିଲେ । ଏହାଛଡ଼ା ସେ ବାରଣାସୀର ଶିବପ୍ରସାଦ ଗୁପ୍ତଙ୍କ ଠାରୁ ମଧ୍ୟ ନିୟମିତ ମାସିକ ଏକଶତ ଟଙ୍କା ଲେଖାଏଁ ସାହାଯ୍ୟ ପାଉଥିଲେ । ଏହି ଶିବପ୍ରସାଦ ଗୁପ୍ତ ବିପ୍ଳବୀ ଦଳର ସଦସ୍ୟମାନଙ୍କ ପଠନୋପଯୋଗୀ କେତେ ଖଣ୍ଡି ବହୁମୂଲ୍ୟ ପୁସ୍ତକ ମଧ୍ୟ ଦାନ କରିଥିଲେ । ପଣ୍ଡିତ ଗଣେଶ ଶଙ୍କର ବିଦ୍ୟାର୍ଥୀ ତଥା ପଣ୍ଡିତ ମୋତିଲାଲ ନେହେରୁ କଂଗ୍ରେସ ସଦସ୍ୟ ଥାଇ ମଧ୍ୟ ଉକ୍ତ ବିପ୍ଳବୀ ଅନୁଷ୍ଠାନକୁ ନିୟମିତ ଅର୍ଥ ଦାନ କରିବା ବିଷୟ ପୂର୍ବରୁ ଉଲ୍ଲେଖ କରାଯାଇଅଛି । ଆଲିଗଡ଼ର ବିଶିଷ୍ଟ କଂଗ୍ରେସ କର୍ମୀ ଠାକୁର ମଲ୍‌ଖାନ୍ ସିଂହ ମଧ୍ୟ ବିପ୍ଳବୀ ମାନଙ୍କୁ ଉଦାର ହୃଦୟରେ ଅର୍ଥ ସାହାଯ୍ୟ ଦେଉଥିଲେ ।

ଏହି ସମୟରେ କଲିକତାରେ ଜାତୀୟ କଂଗ୍ରେସ୍-ଅଧିବେଶନ ପାଇଁ ପ୍ରସ୍ତୁତି ଚାଲିଥିଲା । ଭଗତ୍ ସିଂହ ମଧ୍ୟ ଏହି ସମୟରେ ବଙ୍ଗଳାର ବିପ୍ଳବୀ-ମାନଙ୍କ ସହିତ ସମ୍ପର୍କ ବଢ଼ାଇବାରେ ତତ୍ପର ଥିଲେ । କଲିକତାରେ ସେ ତ୍ରୈଲୋକ୍ୟ ଚକ୍ରବର୍ତ୍ତୀ, ପ୍ରଫୁଲ୍ଲ ଗାଙ୍ଗୁଲି, ଅଧ୍ୟାପକ ଜ୍ୟୋତିଷ ଘୋଷ୍ ଏବଂ ଅନ୍ୟାନ୍ୟ ବିପ୍ଳବୀ ନେତାମାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିପାରିଥିଲେ । ସେ ସେଠାରେ ଯତୀନ୍ଦ୍ରନାଥ ଦାସଙ୍କ ସହିତ ପୁନଃ ସମ୍ବନ୍ଧ ସ୍ଥାପନ କରିବାକୁ ମଧ୍ୟ ସମର୍ଥ ହୋଇ ପାରିଥିଲେ । ଯତୀନ୍ଦ୍ରନାଥ ଦାସ ୧୯୨୪-୨୫ ମସିହାରେ ବିଶିଷ୍ଟ ବିପ୍ଳବୀ ନେତା ରାମପ୍ରସାଦ ବିସ୍ମିଲ୍‌ଙ୍କ ଅମଳରେ ଉତ୍ତର ପ୍ରଦେଶର ହିନ୍ଦୁସ୍ଥାନ ରିପବ୍ଲିକାନ ଏସୋସିଏସନ୍‌ର ଜଣେ ପୁରାତନ କର୍ମୀ । କାକୋରୀ ଷଡ଼ଯନ୍ତ୍ର ମାମଲାରେ କେତେ ଜଣ ବିପ୍ଳବୀ କର୍ମୀଙ୍କୁ ଗିରଫ କଲାପରେ ବଙ୍ଗଳା ସହିତ ଉତ୍ତର ପ୍ରଦେଶର ସମ୍ପର୍କ ଛିନ୍ନ ହୋଇ ଯାଇଥିଲା । ବଙ୍ଗଳାରେ କ୍ରିମିନାଲ୍ ଏମେଣ୍ଡମେଣ୍ଟ୍ ଆଇନ୍ ଲାଗୁ ହେବା ଦ୍ୱାରା ସେଠାରେ ମଧ୍ୟ ପୁଲିସ୍‌ଙ୍କ ଜୁଲୁମ୍ ବଢ଼ି ଯାଇଥିଲା । ବଙ୍ଗଳାର

ଦକ୍ଷିଣେଶ୍ୱର ବୋମାକାଣ୍ଡ ଏବଂ ବିହାରର ଦେଓଘର ଷଡ଼ଯନ୍ତ୍ର ମାମଲା ଫଳରେ ବଙ୍ଗଳା ସହିତ ଯାହା ବି ଅଳ୍ପ ସ୍ୱଳ୍ପ ସମ୍ପର୍କ ଥିଲା, ତାହା ସମ୍ପୂର୍ଣ୍ଣ ଭାବରେ ଛିନ୍ନ ହୋଇଗଲା । କଲିକତାର ବଙ୍ଗୋବାଜାର, ଅଭିଜ୍ଞ ଓ ପୁରାତନ ବିପ୍ଳବୀ ନେତାମାନଙ୍କ ସମ୍ପର୍କରେ ଆସିବାରୁ ସର୍ଦ୍ଦାର ଭଗତ୍ ସିଂହ ସେମାନଙ୍କ ଦ୍ୱାରା ବହୁତ ଭାବରେ ପ୍ରଭାବିତ ହୋଇଥିଲେ । ତ୍ରୈଲୋକ୍ୟ ମହାରାଜଙ୍କ ଦ୍ୱାରା ପ୍ରକାଶିତ ସ୍ମରଣିକାରେ ସର୍ଦ୍ଦାର ଭଗତ ସିଂହଙ୍କୁ ମୁକ୍ତ କଣ୍ଠରେ ପ୍ରଶଂସା କରାଯାଇଛି । ସେମାନଙ୍କ ସହିତ ସମ୍ପର୍କ ସ୍ଥାପିତ ହେଲା ପରେ ଭଗତ୍ ସିଂହଙ୍କର ଏହି ଧାରଣା ହେଲା ଯେ, ପଞ୍ଜାବ ଏବଂ ଉତ୍ତର ପ୍ରଦେଶରେ ତାଙ୍କ ସହଯୋଗୀମାନଙ୍କ ସହାୟତାରେ ସେ ଯେଉଁ ବିପ୍ଳବାତ୍ମକ କାର୍ଯ୍ୟ କରୁଥିଲେ, ସେଥିରେ ବଙ୍ଗଳା ବିପ୍ଳବୀମାନଙ୍କର ବିଶ୍ୱାସ ନ ଥିଲା । ଦେଶର ସ୍ୱାଧୀନତା ହାସଲ ପାଇଁ ସଶସ୍ତ୍ର ଆନ୍ଦୋଳନର ଆବଶ୍ୟକତା ବିଷୟରେ ସମସ୍ତେ ଏକମତ ଥିଲେ ମଧ୍ୟ ସମାଜବାଦ ତଥା ବିପ୍ଳବୀ ଦଳର କାର୍ଯ୍ୟକ୍ରମରେ ଥିବା ସନ୍ତ୍ରାସବାଦ ଓ ଗୋପନୀୟ କାର୍ଯ୍ୟ ଇତ୍ୟାଦି ବିଷୟରେ ସେମାନଙ୍କର ଘୋର ମତଭେଦ ଥିଲା । ଭଗତ ସିଂହଙ୍କ ମତରେ ପଞ୍ଜାବ ଓ ଉତ୍ତର ପ୍ରଦେଶର ଯୁବକମାନଙ୍କୁ ସଶସ୍ତ୍ର ବିପ୍ଳବ ଲାଗି ତାଲିମ୍ ନେବା ପାଇଁ ବ୍ୟକ୍ତିଗତ ହତ୍ୟାକାଣ୍ଡ ଏବଂ ତାର ଫଳ ସ୍ୱରୂପ ଦିଆଯାଉଥିବା ଫାଶୀ ଦଣ୍ଡ ଓ ଅନ୍ୟାନ୍ୟ ଆତ୍ମବଳୀର ଆବଶ୍ୟକତା ଯଥେଷ୍ଟ ଥିଲା ।



## ବିପ୍ଳବର ପଞ୍ଚମ ପର୍ବ—ବୋମା ତିଆରି ଶିକ୍ଷା

ଏଲାହାବାଦ୍‌ରେ ଯତୀନ୍ଦ୍ରନାଥ ସାନ୍ୟାଲ୍‌ଙ୍କ ସହିତ ସର୍ଦ୍ଦାର ଭଗତ୍ ସିଂହଙ୍କର ଯେତେବେଳେ ସାକ୍ଷାତ ହେଉଥିଲା ବା ରାଜନୈତିକ ବିପ୍ଳବୀ

କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ହେଉଥିଲା, ସେତେବେଳେ ଯତୀନ୍ଦ୍ରନାଥ ଭଗତ ସିଂହଙ୍କୁ ଗୋଟିଏ କଥା ସୂଚାଇ ଦେଇଥିଲେ—"ସନ୍ତ୍ରାସବାଦୀ କାର୍ଯ୍ୟରେ ବୋମା ପ୍ରୟୋଗ ନ କଲେ ଉଲ୍ଲେଖଯୋଗ୍ୟ ସଫଳତା ମିଳି ପାରିବ ନାହିଁ" ଦିଲ୍ଲୀରେ ଲର୍ଡ ହାର୍ଡିଞ୍ଜଙ୍କ ଉପରକୁ ଫିଙ୍ଗା ଯାଇଥିବା ବୋମା ବିଷୟ ଆଲୋଚନା ପ୍ରସଙ୍ଗରେ ଏହା ସ୍ୱୀକାର କରାଯାଇଥିଲା ଯେ, ଭାରତରେ ତଥା ଭାରତ ବାହାରେ ଥିବା ଇଂରେଜ-ବିରୋଧୀ ଦେଶ-ଗୁଡ଼ିକରେ ବିପ୍ଳବୀମାନଙ୍କ ଅବସ୍ଥା ବେଶ୍ ଭଲ ଥିଲା ।

ସୁତରାଂ ଭଗତ ସିଂହ ଯେତେବେଳେ ସାହାରାନ୍‌ପୁର ଫେରି ଆସିଲେ, ସେତେବେଳେ ସେ ବୋମା ତିଆରି କରିବାର ପ୍ରଶ୍ନ ଉଠାଇ ଥିଲେ । କିନ୍ତୁ ବୋମା ପ୍ରସ୍ତୁତ କରିବାର ରହସ୍ୟ ସେତେବେଳେ କେବଳ ବଙ୍ଗଳାର ବିପ୍ଳବୀମାନଙ୍କୁହିଁ ଜଣାଥିଲା । ଯତୀନ୍ଦ୍ରନାଥଙ୍କ ପ୍ରସ୍ତାବ ଅନୁ-ସାରେ ସର୍ଦ୍ଦାର ଭଗତ ସିଂହଙ୍କ ସମେତ କେନ୍ଦ୍ରୀୟ ସମିତିର ଆଉ ଜଣେ ଦୁଇଜଣ ସଭ୍ୟଙ୍କୁ ବୋମା ନିର୍ମାଣ ରହସ୍ୟ ଶିଖାଇ ଦେବାକୁ ସ୍ଥିର କରାଗଲା । ଏଥିପାଇଁ ଆବଶ୍ୟକୀୟ ବାରୁଦ ପ୍ରସ୍ତୁତ କରିବା ଲାଗି କମଳନାଥ ତିୱାରୀ ଓ ବୈକୁନାଥ ବନୋଦ୍ କଲିକତାରେ ଜିନିଷ ସଂଗ୍ରହ କରିବାକୁ ଲାଗି ପଡ଼ିଲେ । କଲିକତାରେ କର୍ଣ୍ଣୱାଲିସ୍ ଷ୍ଟ୍ରୀଟ୍‌ରେ ଥିବା ଆର୍ଯ୍ୟସମାଜ ଭବନରେ କମଲ୍‌ନାଥ ଓ ବୈକୁନାଥ ବାସ କରୁଥିଲେ । ସେହିଠାରେହିଁ ବୋମା ନିମିତ୍ତ ବାରୁଦ ତିଆରି କରାଗଲା । ଆଗ୍ରାଠାରେ ବୋମା ପ୍ରସ୍ତୁତ ନିମିତ୍ତ ଏକ ଗୁପ୍ତ ଶିବିର ନିର୍ମାଣ କରାଯାଇଥିଲା । ଉକ୍ତ ବାରୁଦ ସେହି ଶିବିରକୁ ନିଆଗଲା । ଏଠାରେ ସ୍ମରଣ କରାଯାଇ ପାରେ ଯେ, ୧୯୨୪ ମସୀହାରେ ଶଚୀନ୍ଦ୍ରନାଥ ସାନ୍ୟାଲ୍‌ଙ୍କ ଅନୁରୋଧକ୍ରମେ ନବଗଠିତ ହିଂସାତ୍ମକ ବିପ୍ଳବୀ ଦଳର ସଦସ୍ୟ ଶ୍ରୀ ଜ୍ୟୋତିଷଚନ୍ଦ୍ର ବୋଷ୍, ଯତୀନ୍ଦ୍ରନାଥ ଦାସଙ୍କୁ ଦେଓଘର୍ ଠାରେ ବୋମା ପ୍ରସ୍ତୁତ କରିବାର କୌଶଳ ଶିଖାଇ ଥିଲେ । ଯତୀନ୍ଦ୍ରନାଥ ଏହାର ବାଦ ଆସି ଶଚୀନ୍ଦ୍ରନାଥ ସାନ୍ୟାଲଙ୍କ ଘରେ ବୋମା ତିଆରି ପାଇଁ ଆବଶ୍ୟକୀୟ ରସାୟନିକ ଗୁଡ଼ିକର ଏକ ତାଲିକା

ଲେଖି ଦେଇ ଯାଇଥିଲେ । ଏ ଗୁଡ଼ିକ ମଧ୍ୟରୁ କୋଡ଼ୋଟି ରାସାୟନିକ ପଦାର୍ଥ ବିଶ୍ୱବିଦ୍ୟାଳୟର ଲବୋରେଟରୀ ବା ପ୍ରୟୋଗ ଶାଳାରୁ ଅଣାଯାଇ ଥିଲା ଏବଂ ବାକୀ ତକ ଜିନିଷ ବି. କେ. ପାଲ୍ ଏଣ୍ଡ କୋମ୍ପାନୀ ନାମକ ଏକ ବ୍ୟବସାୟ ପ୍ରତିଷ୍ଠାନରୁ କିଣା ଯାଇଥିଲା । ଯତୀନ୍ଦ୍ରନାଥ ଦାସ ପୁଣି ଆଗ୍ରା ଗଲେ । ଶିବ ବର୍ମା ଏବଂ ସୁଖ୍ ଦେବ୍ ବୋମା ତିଆରି କରିବାର ସମସ୍ତ କୌଶଳ ସମ୍ପୂର୍ଣ୍ଣ ଶିଖି ନେଇଥିଲେ । ଏହା ୧୯୨୯ ମସିହା ପ୍ରାରମ୍ଭର ଘଟଣା ।

ବୋମା ନିର୍ମାଣ କାର୍ଯ୍ୟ ସୁଚାରୁରୂପେ ଚାଲିଲା । ଛଅଟି ସାଧାରଣ ଶକ୍ତିସମ୍ପନ୍ନ ବୋମା ତିଆରି ସରିଲା । ଏହା ମଧ୍ୟରୁ ଦୁଇଟିକୁ ବ୍ୟବହାର କରିବା ପାଇଁ ଚନ୍ଦ୍ରଶେଖର ଆଜାଦ୍‌ଙ୍କ କହିବା ଅନୁସାରେ ଝାନ୍‌ସୀ ପଠାଗଲା । ଦିଲ୍ଲୀ ଆସେମ୍ବ୍ଲି ଭବନରେ ଦୁଇଟି ବୋମା ପ୍ରୟୋଗ କରା-ଯାଇଥିଲା । ବାକୀ ଦୁଇଟି ମଧ୍ୟରୁ ଗୋଟିକୁ ସୁଖ୍ ଦେବ୍ ଏବଂ ଅନ୍ୟକୁ ଶିବ ବର୍ମାଙ୍କୁ ଯଥାକ୍ରମେ ସେମାନଙ୍କର ଲାହୋର୍ ଓ ସାହାରନ୍ ପୁରସ୍ଥ କାରଖାନା ପାଇଁ ଦିଆଯାଇଥିଲା । ବୋମା ଗୁଡ଼ିକୁ ସୁରକ୍ଷିତ କରି ରଖିବା ପାଇଁ ଆବଶ୍ୟକ ଖୋଳ ସୁଖ୍ ଦେବ୍ ଲାହୋର୍ ଠାରୁ ତିଆରି କରି ଆଣିଥିଲେ ।

ଏଠାରେ ସ୍ମରଣ ରଖିବା ଉଚିତ ଯେ, କଲିକତାର କଂଗ୍ରେସ ଅଧିବେଶନ ଚାଲିଥିବା ସମୟରେହିଁ ଶଚୀଶ୍ଚନ୍ଦ୍ର ସନ୍ୟାସୀ, ସୂର୍ଯ୍ୟ ସେନ୍ ତଥା ଅନ୍ୟାନ୍ୟ ବିପ୍ଳବୀମାନଙ୍କ ନେତୃତ୍ୱରେ 'ବିଦ୍ରୋହୀ ଦଳ' ନାମରେ ଏକ ନୂତନ ବିପ୍ଳବୀ ଦଳର ଅଭ୍ୟୁଦୟ ହୋଇଥିଲା । ଏଥିରେ ବଙ୍ଗଳାର ବିପ୍ଳବୀ ଦଳ ଗୁଡ଼ିକର ସଦସ୍ୟମାନେ ଯୋଗ ଦେଇଥିଲେ । ମାଛୁଆ ବଜାର ଷଡ଼ଯନ୍ତ୍ର ମାମଲା, ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ତଥା "ବଙ୍ଗଳାର ସ୍ୱୟଂ ସେବକ" ଦ୍ୱାରା କରା ଯାଇଥିବା ବ୍ୟକ୍ତିଗତ ସନ୍ତ୍ରାସବାଦୀ କାର୍ଯ୍ୟମାନ ଏହି ବିପ୍ଳବୀ ଦଳ-ସୃଷ୍ଟିର ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ସମୟରେ ଫଣୀନ୍ଦ୍ର ନାଥ ଘୋଷ୍ ନାମକ ଦଳର ଜଣେ ସଦସ୍ୟ ଭୀଷଣ ସଂଘାତକ ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ଭଗତ ସିଂହ ଏବଂ ତାଙ୍କ ସାଥୀମାନେ ଦିନ ରାତି ଅକ୍ଳାନ୍ତ ପରିଶ୍ରମ କରି ଫଣୀନ୍ଦ୍ରନାଥଙ୍କ ସେବା ଶୁଶ୍ରୂଷା କରିବାକୁ ଲାଗିଲେ । ନିଜେ କାଳେ ଉକ୍ତ ସଂଘାତକ ରୋଗରେ ଆକ୍ରାନ୍ତ ହୋଇ ପଡ଼ିବେ ଏ ଆଶଙ୍କା ବିଷୟ ଚିନ୍ତା କରିବାକୁ ସେମାନଙ୍କର ଅବକାଶ ନ ଥିଲା । ଏହି ଉତ୍ସାହୀ ସାଥୀମାନଙ୍କର ଅବିଶ୍ରାନ୍ତ ସେବା ଶୁଶ୍ରୂଷା ଫଳରେ ଫଣୀନ୍ଦ୍ରନାଥ ଆରୋଗ୍ୟ ଲାଭ କରିଥିଲେ । କିନ୍ତୁ ସେମାନଙ୍କ ଠାରେ କୃତଜ୍ଞତା ଜ୍ଞାପନ କରିବା ତ ଦୂରର କଥା ବରଂ ସେ ସେମାନଙ୍କୁ ଘୋର ବିପଦରେ ପକାଇବାକୁ ଉଦ୍ୟମ କରିଥିଲେ । ତାଙ୍କୁ ଗିରଫ କରିବାର କିଛି ସମୟ ପରେ ସେ ପୁଲିସ ପାଖରେ ତାଙ୍କ ସାଥୀମାନଙ୍କ ନାମ, ଠିକଣା ଓ ସେମାନଙ୍କ କାର୍ଯ୍ୟକ୍ରମ ବିଷୟରେ ସମସ୍ତ ତଥ୍ୟ ଯୋଗାଇ ନିଜେ ଖସି ଯାଇବାକୁ ଉଦ୍ୟମ କରିଥିଲେ । ଏ କଥା ଭଗତ୍ ସିଂହ ଏବଂ ତାଙ୍କ ସହଯୋଗୀମାନଙ୍କୁ ଅଜ୍ଞାତ ରହିଲା ନାହିଁ । ଫଣୀନ୍ଦ୍ରନାଥ ତାଙ୍କ କାର୍ଯ୍ୟକଳାପ ଲାଗି ପୁଲିସ୍ ଠାରୁ ସିନା ରକ୍ଷା ପାଇଲେ, କିନ୍ତୁ ଯେଉଁ ସାଥୀମାନେ ଦିନେ ତାଙ୍କୁ ଭୟଙ୍କର ରୋଗରୁ ରକ୍ଷା କରିବା ପାଇଁ ଦିନରାତି ସେବା କରିଥିଲେ, ସେମାନେ ତାଙ୍କୁ ଛାଡ଼ି ଦେଲେ ନାହିଁ । ଅଳ୍ପଦିନ ଭିତରେ ସେ ତାଙ୍କ ବିଶ୍ୱାସଘାତକତାର ସମୁଚିତ ଦଣ୍ଡ ପାଇଗଲେ । ଦିନ ଦୁଇ ପ୍ରହର ସମୟରେ ବୈକୁଣ୍ଠନାଥ ଶୁକ୍ଳ ଏବଂ ଚନ୍ଦ୍ରିକା ତାଙ୍କର ଦୁଇଜଣ ବନ୍ଧୁ ତାଙ୍କୁ ଛୁରି ମାରି ହତ୍ୟା କଲେ । ଏଥିପାଇଁ ବୈକୁଣ୍ଠନାଥଙ୍କୁ ୧୯୩୪ ମସୀହା ମଇ ମାସ ୧୪ ତାରିଖ ଦିନ ଗୟା ଜେଲରେ ଫାଶୀ ଦଣ୍ଡ ଦିଆଗଲା ଏବଂ ଚନ୍ଦ୍ରିକାଙ୍କୁ ନିର୍ବାସନ ଦଣ୍ଡ ଦିଆ ଯାଇଥିଲା ।



# ବିପ୍ଳବର ଷଷ୍ଠ ପର୍ବ—ଏସେମ୍ବ୍ଲି ବୋମାକାଣ୍ଡ

୧୯୨୯ ମସୀହା ଅପ୍ରେଲ୍ ୮ ତାରିଖ ଦିନ ଭାରତର ରାଜଧାନୀ ଦିଲ୍ଲୀରେ ଏକ ଅପୂର୍ବ ଘଟଣା ଘଟିଥିଲା । ହିନ୍ଦୁସ୍ଥାନ୍ ସୋସାଲିଷ୍ଟ ରିପବ୍ଲିକାନ୍ ଆର୍ମୀର ଦୁଇଜଣ ପ୍ରତିନିଧି କୌଣସି ପ୍ରକାରେ ଏସେମ୍ବ୍ଲି ଭବନର ଦର୍ଶକ ଗେଲେରୀ ଭିତରକୁ ପ୍ରବେଶ କଲେ । ସେମାନେ ସେମାନଙ୍କ ସହିତ ଦୁଇଟି ବୋମା ନେଇଥିଲେ । ଏସେମ୍ବ୍ଲି ହଲରେ ସଦସ୍ୟ-ମାନଙ୍କ ମଧ୍ୟରେ ଆଲୋଚନା ଚାଲିଥିବା ସମୟରେ ସେମାନେ ସରକାରୀ ପ୍ରତିନିଧି ଏବଂ ସେମାନଙ୍କ ସମର୍ଥକମାନେ ବସିଥିବା ସ୍ଥାନ ଉପରକୁ ଉପର୍ଯ୍ୟୁପରି ଦୁଇଟି ବୋମା ଫିଙ୍ଗି ଥିଲେ । ବୋମା ଦୁଇଟି ଭୀଷଣ ଶବ୍ଦ କରି ସଙ୍ଗେ ସଙ୍ଗେ ବିସ୍ଫୋରିତ ହେଲା ଏବଂ ସମଗ୍ର ଏସେମ୍ବ୍ଲି ହଲଟି ଧୂମ ରାଶିରେ ପୂର୍ଣ୍ଣ ହୋଇଗଲା । ଯେଉଁ ବେଞ୍ଚ ପାଖରେ ବୋମା ଦୁଇଟି ଫାଟିଲା ସେଠାରେ ବସିଥିବା ବ୍ୟକ୍ତିମାନେ ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲେ । କିନ୍ତୁ ପାଖରେ ଥିବା କୌଣସି ବ୍ୟକ୍ତି ବିଶେଷ ଭାବରେ ଆହତ ହୋଇ ନ ଥିଲେ ।

ବୋମା ବିସ୍ଫୋରଣ ପରେ ହଲ ମଧ୍ୟରେ ଯେଉଁ ଦୃଶ୍ୟମାନ ଦୃଶ୍ୟ ଦେଖାଯାଇଥିଲା ତାହା ବିଶେଷ ଉଲ୍ଲେଖଯୋଗ୍ୟ । ଧୂଆଁର ଘନ କୁହୁଡ଼ି ମଧ୍ୟରେ କିଏ କୁଆଡ଼େ ପଳାଉଥିଲେ ତାର ଇୟତ୍ତା ନ ଥିଲା । ଏହି ସମୟରେ ଦଳା ମକଚା ଓ ସଂଘର୍ଷ ଦ୍ୱାରା ମଧ୍ୟ ଅନେକ ଲୋକ ଆହତ ହୋଇ ପଡ଼ି-ଥିଲେ । ସେମାନେ ଇତସ୍ତତ ଏପରି ଦୌଡ଼ୁଥିଲେ ଯେ ତାହା ଦେଖିଲେ ମନେ ହେଉଥିଲା ଯେପରି କୌଣସି ଯାଦୁକର ସେମାନଙ୍କୁ ମନ୍ତ୍ର-ମୁଗ୍ଧ କରି ଦଉଡ଼ାଉ ଥିଲା । ଏସେମ୍ବ୍ଲିର ମାନ୍ୟବର ସଦସ୍ୟମାନେ ଭୟ-ବିହ୍ୱଳିତ ହୋଇ ଏସେମ୍ବ୍ଲି ଗୃହର ପାଇଖାନା, ଗାଧୁଆଘର ଓ ପରିସ୍ରାଖାନା ଭିତରେ ମଧ୍ୟ ଆତ୍ମଗୋପନ କରିଥିବାର ସମ୍ବାଦ ତତ୍କାଳୀନ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଥିଲା । ଆସନ୍ନ ମୃତ୍ୟୁରୁ ରକ୍ଷା ପାଇବାପାଇଁ ସେମୁହୂର୍ତ୍ତରେ ଯାହାକୁ ଯେଉଁଠି ସ୍ଥାନ ମିଳିଥିଲା ସେ ସେଠାରେ ଲୁଚିଯିବାକୁ ଉଦ୍ୟମ କରିଥିଲେ ।

ନୁଏ ସର୍ଦ୍ଦାର ଭଗତ ସିଂହ ଜଣେ କଠୋର, ହୃଦୟହୀନ ତଥା ଚିନ୍ତାଶୂନ୍ୟ ବ୍ୟକ୍ତି । କିନ୍ତୁ ସେ ନିଜର ବନ୍ଧୁବନ୍ଦନର ନିକଟତମ ବନ୍ଧୁଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ, ତାହା ତାଙ୍କ ହୃଦୟର କୋମଳ ଭାବନାର ଶ୍ରେଷ୍ଠ ପରିଚୟସ୍ୱକ । ସ୍ଥାୟୀ ବନ୍ଧନ ତାରେ ବିଚ୍ଛେଦ ତଥା ଜୀବନରେ ହୁଏତ ପୁଣି ଆଉ ବନ୍ଧୁ ସହିତ ସାକ୍ଷାତ ହୋଇ ପାରିବ ନାହିଁ, ଏହି ବିଶ୍ୱାସ ପୋଷଣ କରି ଭଗତ୍ ସିଂହ ସୁଖ୍‌ଦେବଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ, ସେଥିରେ ସେ ନିଜର ଅନ୍ତରତମ ପ୍ରଦେଶର ଭାବ ବ୍ୟକ୍ତ କରିଥିଲେ । ସେ ଭାବ ଅତ୍ୟନ୍ତ ମର୍ମସ୍ପର୍ଶୀ ଏବଂ ଭାବୋଦ୍ଦୀପକ । ପତ୍ର ଲେଖିବା ସମୟରେ ପ୍ରେମ ଏବଂ ଆତ୍ମୀୟତାର ଭାବରେ ଅଭିଭୂତ ହୋଇପଡ଼ିଥିଲେ ମଧ୍ୟ ନିଜର ଭାବୀ କର୍ତ୍ତବ୍ୟପଥ ତାଙ୍କୁ ସ୍ପଷ୍ଟ ଦେଖାଯାଉଥିଲା । ଏ ପରିସ୍ଥିତିରେ ତାଙ୍କ ହୃଦୟର ଗଭୀରତମ ପ୍ରଦେଶରେ ପ୍ରେମ ଏବଂ ଆତ୍ମୀୟତାର ଭାବନା ସହିତ କର୍ତ୍ତବ୍ୟ ନିଷ୍ଠାର ଅନ୍ତର୍ଦ୍ୱନ୍ଦ୍ୱ ହେବା ଏକାନ୍ତ ସ୍ୱାଭାବିକ ଥିଲା । ପତ୍ରରେ ସର୍ଦ୍ଦାର ଭଗତ୍ ସିଂହ ଅତି ଭାବବିହ୍ୱଳ ହୋଇ ଏହି ଦ୍ୱନ୍ଦ୍ୱ ବିଷୟ ଚର୍ଚ୍ଚା କରିବାକୁ ଯାଇ ଷ୍ଟେପ୍‌ନିୟାକ୍‌ଙ୍କ ଲିଖିତ ତାଙ୍କର ପ୍ରିୟ ପୁସ୍ତିକା 'ଜଣେ ନିହିଲିଷ୍ଟର ଜୀବନୀ' (Career of a Nihilist) ରୁ ମଧ୍ୟ କେତୋଟି ଉଦାହରଣ ଦେଇଥିଲେ । ପ୍ରେମ ବିପ୍ଳବୀ ଜୀବନର ଏକ ଅଭିନ୍ନ ଅଙ୍ଗ ବୋଲି ସେ ତାଙ୍କ ପତ୍ରରେ ଦୃଢ଼ଭାବରେ ବ୍ୟକ୍ତ କରିଛନ୍ତି ।

ଦୁର୍ଭାଗ୍ୟବଶତଃ ପୁଲିସ୍ ଏ ପତ୍ର ରୂପକ ଅମୂଲ୍ୟ ରତ୍ନଟିକୁ ଲାହୋର ସହରସ୍ଥ ମୋଜଙ୍ଗ ହାଉସ୍ ବୋମା କାରଖାନାରୁ ପାଇଥିଲେ । ମାତ୍ର ଅଦାଲତରେ ଦାଖଲ କରି ନଥିଲେ । ଏ ପତ୍ର ଖଣ୍ଡି ଅବଶ୍ୟ ଆଜି ଆମ୍ଭମାନଙ୍କ ପାଖରେ ନାହିଁ । କିନ୍ତୁ ତାର ମହତ୍ତ୍ୱ ଏବେ ବି ଜାଜ୍ଜ୍ୱଲ୍ୟମାନ ଅଛି । ଭଗତ୍ ସିଂହଙ୍କ ବୁଦ୍ଧିବଳରେ ବିପ୍ଳବୀଦଳର ପ୍ରଚାର ପାଇଁ ଏସେମ୍ବ୍ଲି-ବୋମାକାଣ୍ଡ ମୋକଦ୍ଦମାକୁ ଉପଯୁକ୍ତ ଭାବରେ ବିନିଯୋଗ କରାଯାଇ ପାରିଥିଲା । ଭଗତ୍ ସିଂହ ଏବଂ ବଟୁକେଶ୍ୱର ଦତ୍ତହିଁ ପ୍ରଥମ ଥରପାଇଁ ଦିଲ୍ଲୀର ଖୋଲା ଅଦାଲତରେ 'ଇନ୍‌କିଲାବ୍ ଜିନ୍ଦାବାଦ' 'ଶ୍ରମିକବର୍ଗ ଜିନ୍ଦାବାଦ' ଇତ୍ୟାଦି ସ୍ଲୋଗାନ ଦେବାକୁ ଲାଗିଲେ । ଏଥିପାଇଁ ଯେତେଦିନ ପର୍ଯ୍ୟନ୍ତ ମୋକଦ୍ଦମା

ଗୃହୀତଥିଲା, ସେତେବେଳେ ପର୍ଯ୍ୟନ୍ତ ଅଦାଲତରେ ଏ ଦୁହିଁଙ୍କୁ ଦାଉଳଡ଼ା ମିଳାଇ ଦିଆଯାଉଥିଲା । ତଥାପି ସେମାନେ ଅଦାଲତରେ ନିର୍ଭୀକ ଭାବରେ ନିଜକୁ ବିପ୍ଳବୀଦଳର ସଦସ୍ୟ ବୋଲି ସ୍ୱୀକାର କରୁଥିଲେ । ନିଜନିଜର ବକ୍ତବ୍ୟ ମାଧ୍ୟମରେ ସେମାନେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଅନୁରୋଧ ଜଣାଇ କହୁଥିଲେ ଯେ, ମଜଦୁର ଏବଂ କୃଷକମାନେ ସୁସଂଗଠିତ ହେବା ଉଚିତ । ତାହାହେଲେ ଭାରତୀୟମାନଙ୍କ ପାଇଁ ପ୍ରକୃତ ମୁକ୍ତି ଆଣିଦେବା ଭଳି ସ୍ୱରାଜ୍ୟ ସ୍ଥାପିତ ହୋଇପାରିବ ।

ସେସନ୍ କୋର୍ଟରେ ଭଗତ୍ ସିଂହ ଏବଂ ବଟୁକେଶ୍ୱର ଦତ୍ତ ଯେଉଁ ବକ୍ତବ୍ୟ ଦେଇଥିଲେ, ଚତୁରତା ସହିତ ତାହାକୁ ପୂର୍ବରୁ ଅଦାଲତ୍ ବାହାରକୁ ପଠାଇ ଦିଆଯାଇଥିଲା । ଅଦାଲତ୍‌ରେ ଏ ବକ୍ତବ୍ୟ ଦିଆ ହେବା ପୂର୍ବରୁ ହିଁ ଏହାର ଟାଇପ୍ କରାଯାଇଥିବା ନକଲ ଦେଶର ପ୍ରତ୍ୟେକ ବିଶିଷ୍ଟ ସମ୍ବାଦ ପତ୍ରକୁ ପଠାଇ ଦିଆଯାଇଥିଲା । ଏଥିପାଇଁ ଟେଲିଗ୍ରାମର ଆଶ୍ରୟ ନିଆଯାଇ ନଥିଲା; କାରଣ ଏହାଦ୍ୱାରା ମୂଳ ବକ୍ତବ୍ୟକୁ କାଟ ଛାଣ୍ଟ କରି ଏହାକୁ ବିକୃତ ଭାବରେ ଉପସ୍ଥାପନ କରିବାର ଯଥେଷ୍ଟ ଆଶଙ୍କା ଥିଲା । ଭାରତର ସମସ୍ତ ମୁଖ୍ୟ ସମ୍ବାଦପତ୍ରରେ ବକ୍ତବ୍ୟଟି ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଇଥିଲା । କେବଳ ଏତିକିନୁହେଁ, ଉକ୍ତ ବକ୍ତବ୍ୟର ନକଲମାନ ଭାରତ ବାହାରେ ଥିବା ଦେଶ-ମାନଙ୍କୁ ମଧ୍ୟ ପଠା ଯାଇଥିଲା ଏବଂ ଏହାର ବିଶିଷ୍ଟ ଅଂଶଗୁଡ଼ିକ ଆୟାର୍‌ଲାଣ୍ଡର 'ଲିବ୍ୟମେନାଟ' ଓ ରୁଷିଆର 'ପ୍ରଭଦା' ପ୍ରଭୃତି ବିଖ୍ୟାତ ସମ୍ବାଦପତ୍ର-ମାନଙ୍କରେ ପ୍ରକାଶ ପାଇଥିଲା । ଏ ବକ୍ତବ୍ୟର ପ୍ରଚାର କରିବା ଦିଗରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଶ୍ରୀ ବିଜୟ କୁମାର ସିହ୍ନା । ସେ ଯେ ଜଣେ କେବଳ ଦକ୍ଷ ସମ୍ପାଦକ ଥିଲେ ତାହା ନୁହେଁ, ଜଣେ ନିର୍ଭୀକ ବିପ୍ଳବୀ ହିସାବରେ ମଧ୍ୟ ତାଙ୍କ ସୁନାମ ଥିଲା ।

ଦେଶର ସାଧାରଣ ଜନତା, ବିଶେଷକରି ଯୁବକମାନେ ଏ ବକ୍ତବ୍ୟରେ ଶୀଘ୍ର ପ୍ରଭାବିତ ହେଲେ । ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ପ୍ରଥମେ ଏସେମ୍ବ୍ଲି ବୋମା ଘଟଣାକୁ ଉଗ୍ର ଭାବରେ ନିନ୍ଦା କରୁଥିଲେ, ସେମାନେ ଏବେ

ସେମାନଙ୍କର ସ୍ୱର ବଦଳାଇବାକୁ ଆରମ୍ଭ କଲେ । ପଣ୍ଡିତ ଜବାହାରଲାଲ ନେହେରୁ ଯେତେବେଳେ ଏହି ବୋମା କାଣ୍ଡକୁ ଘୃଣ୍ୟ ଭାବେ ନିନ୍ଦା କରିଥିଲେ । ବକ୍ତବ୍ୟ ପାଠ ପରେ ସେ ନିଜର ସ୍ୱର ବଦଳାଇ ପୁଣି ପ୍ରଚାର କରିବାକୁ ଲାଗିଲେ ଯେ ଏସେମ୍ବ୍ଲି ବୋମାନିକ୍ଷେପ ଏବଂ ବୋମା ନିକ୍ଷେପ କରୁଥିବା ବିପ୍ଳବୀମାନଙ୍କର ସମସ୍ତ ଯୁକ୍ତିଯୁକ୍ତ ନିଶ୍ଚିତ ଭାବରେ ପ୍ରେରଣା-ଦାୟକ ହେବା କେବଳ ପଣ୍ଡିତ ନେହେରୁ ନୁହନ୍ତି, ତାଙ୍କ ସହିତ ଯେ ସମସ୍ତେ ଅନେକ ଜନନାୟକ ସର୍ଦ୍ଦାର ଭଗତ୍ ସିଂହ ଏବଂ ବଟୁକେଶ୍ୱର ଦତ୍ତଙ୍କ ଦୁଃସାହସିକ କାର୍ଯ୍ୟକୁ ଶତମୁଖରେ ପ୍ରଶଂସା କରିବାକୁ ଲାଗିଲେ ।

ଏହାପରେ ସ୍ୱୟଂ ଭଗତ୍ ସିଂହଙ୍କ ଦ୍ୱାରା ସ୍ଥାପିତ 'ନବଯୁବ ଭାରତ ସଭା' ଏସେମ୍ବ୍ଲି ବୋମା କାଣ୍ଡ ତଥା ଅଦାଲତରେ ଭଗତ୍ ସିଂହଙ୍କ ବକ୍ତବ୍ୟର ପ୍ରଚାର ଭାର ନିଜ ହାତକୁ ନେଇଥିଲେ । ଭଗତ୍ ସିଂହ ଏବଂ ବଟୁକେଶ୍ୱର ଦତ୍ତଙ୍କ ବକ୍ତବ୍ୟର ଲକ୍ଷଲକ୍ଷ ନକଲ ସେମାନଙ୍କର ପ୍ରଚଳିତ ଫଟୋଚିତ୍ର ସହ ଛପା ହୋଇ ଉତ୍ତର ପ୍ରଦେଶ, ପଞ୍ଜାବ ଏବଂ ସୀମାନ୍ତ ଅଞ୍ଚଳରେ ବିତରଣ କରାଯାଇଥିଲା । ବଙ୍ଗଳାର ବିପ୍ଳବୀମାନେ ଏହାକୁ ବଙ୍ଗଳାରେ ବିତରଣ କରିବାର ଦାୟିତ୍ୱ ଗ୍ରହଣ କଲେ । ଲାହୋର ଷଡ଼ଯନ୍ତ୍ର ମାମଲାରେ ଅନଶନ ପାଇଁ ପ୍ରସିଦ୍ଧି ଲାଭ କରିଥିବା ଯତୀନ୍ଦ୍ରନାଥ ଦାସ ଏ ପ୍ରଚାରପତ୍ରର ନକଲ ଆଣି ନେଇଯିବା ପାଇଁ ନିଜର ପ୍ରତିନିଧି ଧୀରେନ୍ଦ୍ର ମୁଖର୍ଜିଙ୍କୁ ପଠାଇଥିଲେ । ଧୀରେନ୍ଦ୍ର ଏ ପତ୍ରଗୁଡ଼ିକ ମଧ୍ୟରୁ କେତେକ ଏଲାହାବାଦର ଜଣେ ବିପ୍ଳବୀ ନଳିନୀକାନ୍ତଙ୍କୁ ଦେଇ ଯାଇଥିଲେ । ଏହା ଫଳରେ ବକ୍ତବ୍ୟର ବହୁ ନକଲ ଏଲାହାବାଦ ଓ ବାରାଣସୀରେ ବଣ୍ଟାଯାଇ ପାରିଥିଲା । ତାଙ୍କ ପାଖରେ ଆଉ ଯାହା ପତ୍ରିକା ବଳିଲା, ତାକୁ ସେ କଲିକତା ନେଇ ଆସିଲେ । ସେଠାରେ ଯତୀନ୍ଦ୍ରନାଥ ଦାସ ନିଜ କର୍ମକର୍ତ୍ତାମାନଙ୍କ ସହାୟତାରେ ସେଗୁଡ଼ିକ ବ୍ୟାପକ ଭାବରେ ବିତରଣ କରିବାକୁ ଲାଗିଲେ ।

ସଂକ୍ଷେପରେ କହିବାକୁ ଗଲେ ଏହି ଏସେମ୍ବ୍ଲି କାଣ୍ଡ ମାଧ୍ୟମରେ ଏ କାଣ୍ଡର ଆୟୋଜନ ତଥା 'ହିନ୍ଦୁସ୍ଥାନ ସୋସାଲିଷ୍ଟ୍ ରିପବ୍ଲିକାନ୍ ଏସୋସିଏସନ୍' ର କେନ୍ଦ୍ରୀୟ ସମିତି ସଦସ୍ୟମାନଙ୍କର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ-

ରୂପେ ଚରିତାର୍ଥ ହେଲ । ଏହାଦ୍ୱାରା ଉକ୍ତ ବିପ୍ଳବୀ ସଂଗଠନର ଦୁଇଜଣ ପ୍ରତିନିଧିଙ୍କ ପ୍ରତିଷ୍ଠା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସଂଗଠନର ମହତ୍ତ୍ୱ ମଧ୍ୟ ବଢ଼ିଲ ଏବଂ ଦେଶର ଅଗଣିତ ଯୁବକମାନଙ୍କ ପ୍ରାଣରେ ମାତୃଭୂମିର ସେବାପାଇଁ ଗଭୀର ଆବେଗ ସୃଷ୍ଟି ହେଲ । ଭଗତ୍ ସିଂହ ଏବଂ ବଟୁକେଶ୍ୱର ଦତ୍ତଙ୍କ ଯେଉଁ ବକ୍ତବ୍ୟ ସମଗ୍ର ଦେଶ ତଥା ବିଦେଶରେ ଏପରି ଆଲୋଡ଼ନ ସୃଷ୍ଟି କରିଥିଲା, ତାର ଏକ ବିଶିଷ୍ଟ ଅଂଶ ଏଠାରେ ଉଦ୍ଧାର କରିବା ଏକାନ୍ତ ବିଧେୟ । ୧୯୨୯ ମସିହା ଜୁନ ୮ ତାରିଖ ଦିନ ସେସନଜଜଙ୍କ ଅଦାଲତରେ ଦିଆଯାଇଥିବା ଉକ୍ତ ଲିଖିତ ବକ୍ତବ୍ୟର କିୟଦଂଶ ନିମ୍ନରେ ପ୍ରଦତ୍ତ ହେଲ :—

"ଆମ ଉପରେ ଗଭୀର ଦୋଷାରୋପ କରାଯାଇଛି ଏବଂ ଆମେ ଏଠାରେ ବର୍ତ୍ତମାନ ଆମ ଆଚରଣର ସ୍ପଷ୍ଟୀକରଣ ଦେଉଅଛୁ ।

ଏ ବିଷୟରେ ନିମ୍ନଲିଖିତ ପ୍ରଶ୍ନଗୁଡ଼ିକ ଉଠେ :—

(୧) ଏସେମ୍ବ୍ଲି ଭବନରେ ବୋମା ଫିଙ୍ଗା ଯାଇଥିଲ କି ? ଯଦି ହଁ, ତା' ହେଲେ କାହିଁକି ?

(୨) ତଳ ଅଦାଲତରେ ଆମ ଉପରେ ଯେଉଁ ଦୋଷାରୋପ କରାଯାଇଛି, ତାହା କେତେଦୂର ସତ୍ୟ ଅଥବା ମିଥ୍ୟା ?"

"ପ୍ରଥମ ପ୍ରଶ୍ନର ପ୍ରଥମାର୍ଦ୍ଧ ସମ୍ବନ୍ଧରେ ଆମର ଉତ୍ତର ସ୍ୱୀକାରାତ୍ମକ, କିନ୍ତୁ ତଥାକଥିତ କେତେକ ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀ ଏ ବିଷୟରେ ମିଥ୍ୟା ସାକ୍ଷ୍ୟ ଦେଇଛନ୍ତି । ବୋମା ଫିଙ୍ଗା ହେବା ସମ୍ବନ୍ଧରେ ଆମେ ଯେ ଦାୟୀ ଅଟୁଁ, ତାହା ଆମେ ଅସ୍ୱୀକାର କରୁନାହୁଁ । ତେଣୁ ସେମାନଙ୍କର ସାକ୍ଷ୍ୟକୁ ସେମାନଙ୍କର ଯୋଗ୍ୟତା ଅନୁସାରେ ମହତ୍ତ୍ୱ ଦିଆଯାଉ । ଉଦାହରଣ ସ୍ୱରୂପ ଆମେ ଏହା ସ୍ପଷ୍ଟ କରି ଦେବାକୁ ଚାହୁଁଛୁ ଯେ, ଆମ ଦୁହିଁଙ୍କ ମଧ୍ୟରୁ ଜଣକ ହାତରୁ ସାର୍ଜେଣ୍ଟ ଟେରି ପିସ୍ତଲ ଛଡ଼ାଇ ନେଇଥିଲେ ବୋଲି ଯେଉଁ ସାକ୍ଷ୍ୟ

ଦେଇଛନ୍ତି ତାହା ସମ୍ପୂର୍ଣ୍ଣ ମିଥ୍ୟା ; କାରଣ ଆମେ ଯେତେବେଳେ ଆତ୍ମ-ସମର୍ପଣ କଲୁଁ, ସେତେବେଳେ ଆମ ଦୁହିଁଙ୍କ ଭିତରୁ କାହାର ହାତରେ ପିସ୍ତଲ ନ ଥିଲା ।"

"ଯେଉଁ ଅନ୍ୟ କେତେଜଣ ସାକ୍ଷୀ ଆମକୁ ବୋମା ଫିଙ୍ଗିଥିବା ଅବସ୍ଥାରେ ଦେଖିଛନ୍ତି ବୋଲି ସାକ୍ଷ୍ୟ ଦେଉଛନ୍ତି, ସେମାନେ ମଧ୍ୟ ମିଥ୍ୟା କହିବାକୁ ଟିକିଏହେଲେ ସଙ୍କୋଚ ବୋଧ କରି ନାହାନ୍ତି । ଯେଉଁମାନେ ନ୍ୟାୟର ପବିତ୍ରତା ଏବଂ ନ୍ୟାୟ ତତ୍ତ୍ୱର ଦ୍ୱାହି ଦେଉଛନ୍ତି, ସେମାନଙ୍କର ଏ କଥାଗୁଡ଼ିକ ପ୍ରତି ବିଶେଷ ଧ୍ୟାନ ଦେବା ଉଚିତ । ଏଥି ସଙ୍ଗେ ସଙ୍ଗେ ଆମେ ସରକାରୀ ଓକିଲ, ଅଦାଲତର ବର୍ତ୍ତମାନର ନିଷ୍ପକ୍ଷ ରୀତି ତଥା ନ୍ୟାୟପୂର୍ଣ୍ଣ ଦୃଷ୍ଟିକୋଣର ପ୍ରଶଂସା କରୁଛୁଁ ।"

"ଆଜି ଯେଉଁ ଘଟଣା ଐତିହାସିକ ରୂପ ଗ୍ରହଣ କରିସାରିଛି ସେ ସମ୍ପର୍କରେ ନିଜର ଉଦ୍ଦେଶ୍ୟକୁ ବିଶେଷ ରୂପରେ ଦର୍ଶାଇ ପାରିବୁ ବୋଲି ପ୍ରଥମ ପର୍ଯ୍ୟାୟର ଉତ୍ତରରେ ସ୍ପଷ୍ଟୀକରଣ ଦେବା ପାଇଁ ଆମେ ବାଧ୍ୟ ହୋଇଛୁ । ଜେଲ୍ ଭିତରେ ଆମ ସହିତ ସାକ୍ଷାତ କରିବାକୁ ଆସିଥିବା ପୁଲିସ୍ କର୍ମଚାରୀ ଯେତେବେଳେ ଆମକୁ କହିଲେ ଯେ, ଏ ଘଟଣା (ବୋମା ଫିଙ୍ଗା) ପରେ ପରେ ଉଭୟ ସଭାର ଅଧିବେଶନରେ ବଡ଼ଲାଟ୍ ଲର୍ଡ ଇରଉଇନ୍ ମନ୍ତବ୍ୟ ଦେଇ କହିଛନ୍ତି, ଏହି ଆକ୍ରମଣ କୌଣସି ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ ହୋଇ ନ ଥିଲା ବରଂ ସମ୍ବିଧାନ ବିରୁଦ୍ଧରେ ହିଁ ହୋଇଥିଲା, ସେତେବେଳେ ଯଥାର୍ଥରେ ଘଟଣାଟିର ପ୍ରକୃତ ମୂଲ୍ୟାଙ୍କନ ହୋଇପାରିଛି ବୋଲି ଆମେ ସ୍ୱୀକାର କରି ନେଇଥିଲୁଁ ।"

"ମାନବ ଜୀବନ ପ୍ରତି ଶ୍ରଦ୍ଧା ନିବେଦନ କରିବା ଦିଗରେ ଆମେ କାହାରଠାରୁ ପଛରେ ପଡ଼ିନାହୁଁ ବା କୌଣସି ବ୍ୟକ୍ତି ବିଶେଷଙ୍କ ପ୍ରତି ଆମର ଦୁର୍ଭାବନା ନାହିଁ । ଆମେ ମାନବ ଜୀବନକୁ ଏତେ ପବିତ୍ର ମନେକରୁଁ ଯେ, ସମାଜବାଦୀ ଦେୱାନ୍ ଚମନ୍‌ଲାଲ୍ କହିଲାଭଳି ତାକୁ

ଭାରତରେ ବ୍ୟକ୍ତ କରିହେବ ନାହିଁ । ଆମେ କେଉଁ ନୀତିକୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବା ଲୋକ ନୋହୁଁ । ସୁତରାଂ ଆମେ ଦେଶପାଇଁ ଯେବେହେଲେ କଳଙ୍କ ହୋଇ ନ ପାରୁଁ । ଲାହୋର୍‌ର 'ଟ୍ରିବ୍ୟୁନ୍' ନିଜ ପାଠକଙ୍କ ସମ୍ମୁଖରେ ଆମକୁ ଯେଉଁଭଳି ଚିତ୍ରିତ କରିବାର ଅପପ୍ରୟାସ କରିଛନ୍ତି ଆମେ ସେଭଳି ପାଗଳ ମଧ୍ୟ ନୋହୁଁ ।"

"ଆମେ ନମ୍ରତା ସହକାରେ ଜୋର୍ ଦେଇ କହୁଛୁଁ ଯେ, ଆମେ ହେଉଛୁଁ ଆମ ଦେଶର ସ୍ଥିତି, ତାର ଇତିହାସ ତଥା ମାନବ ଆକାଙ୍କ୍ଷାର ଅଭିନିଷ୍ଟ ପାଠକ । ଆମେ ଅସତ୍ୟ ଏବଂ ମିଥ୍ୟାଚରଣକୁ ଘୃଣା କରୁଁ ।"

"ଯେଉଁ ସଂସ୍ଥା ତାର ଜନ୍ମକାଳରୁ ନିଜର କେବଳ ପୂର୍ଣ୍ଣ ନିରର୍ଥକତା ନୁହେଁ ଅଧିକନ୍ତୁ ବ୍ୟାପକ ଉପଦ୍ରବ ଏବଂ ଅତ୍ୟାଚାର-କ୍ଷମତା ପ୍ରମାଣିତ କରି ଆସିଛି, ସେ ସଂସ୍ଥାକୁ ଆମେ ସ୍ୱଭାବତଃ ବିରୋଧ କରୁଁ । ଏ ବିଷୟରେ ଆମେ ଯେତିକି ଗମ୍ଭୀର ଚିନ୍ତା କରୁଛୁଁ ଆମ ମନରେ ସେତିକି ଏହି ବିଶ୍ୱାସ ଦୃଢ଼ୀଭୂତ ହେଉଛି ଯେ ପୃଥିବୀ ସମକ୍ଷରେ ଭାରତର ଅସହାୟ ଓ ଅପମାନଜନକ ସ୍ଥିତିର ଉଦ୍‌ଘୋଷଣା କରିବା ପାଇଁ ତଥା ଏହି ଦେଶ ଉପରେ ଏକ ଅତ୍ୟାଚାରୀ ନିରଙ୍କୁଶ ଆଧିପତ୍ୟ ବଜାୟ ରଖିବା ପାଇଁ ଏ ସଂସ୍ଥାର ସୃଷ୍ଟି ଓ ସ୍ଥିତି ।"

"ଲୋକପ୍ରତିନିଧିମାନେ ବାରମ୍ବାର ଜାତୀୟ ଦାବୀକୁ ଉପସ୍ଥିତ କରିଥିଲେ ମଧ୍ୟ ତାହାକୁ ଛିଣ୍ଡା କାଗଜ ଟୋକେଇରେ ସ୍ଥାନ ଦେବା ବ୍ୟତୀତ ତାହାର ଅଧିକ କିଛି ମୂଲ୍ୟାଙ୍କନ କରାଯାଇନାହିଁ । ସଦନ ଦ୍ୱାରା ସ୍ୱୀକୃତ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବଗୁଡ଼ିକୁ ତଥାକଥିତ ଭାରତୀୟ ପାର୍ଲିମେଣ୍ଟ ପ୍ରାଙ୍ଗଣରେ ଉପେକ୍ଷା କରି ପାଦରେ ଦଳି ଦିଆଯାଇଛି । ଅତ୍ୟାଚାର ଏବଂ ସ୍ୱେଚ୍ଛାଚାର ପାଇଁ ଅଧିକାର ଦେଉଥିବା ଆଇନ୍ କାନୁନ୍‌ଗୁଡ଼ିକୁ ରଦ୍ଦ କରିବା ଦିଗରେ ଯେଉଁ ସବୁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା, ସେଗୁଡ଼ିକ ପ୍ରତି ନିନ୍ଦନୀୟ ବ୍ୟବହାର କରାଯାଇଛି ଏବଂ ଯେଉଁ ସବୁ ସରକାରୀ ପ୍ରସ୍ତାବ ତଥା ବିଧେୟକଗୁଡ଼ିକ—

ଗୁଡ଼ିକୁ ନଗ ଚଚ ସଦସ୍ୟମାନେ ପ୍ରତ୍ୟାଖ୍ୟାନ କରି ଦେଇଛନ୍ତି, କେବଳ କଳମର ନେ ରଚେ ବେଆଇନ ପୁଣି କାର୍ଯ୍ୟକାରୀ କରି ଦିଆଯାଇ ଅଛି ।"

"ସଂକ୍ଷେପରେ କହିବାକୁ ଗଲେ ଭାରତରେ କୋଟି କୋଟି ଜନତାଙ୍କ ଶୋଷଣ ଏବଂ ଦଳନକୁ ଅର୍ଜିତ ଶକ୍ତି ଉପରେ ଆତ୍ମମୃତ ସହକାରେ ବଜାୟ ରଖାଯାଇଥିବା ଏହି ସଂସ୍ଥାର କୌଣସି ଔଚିତ୍ୟକୁ ଆମେ ବୁଝି ପାରିନାହୁଁ । ବରଂ ଏହା ଯେ ଏକ ଫମ୍ପା, କଣ୍ଢେଇନାଚ ଏବଂ ଉପଦ୍ରବମୂଳକ ସଂସ୍ଥା, ତାହା ସ୍ପଷ୍ଟ ହୋଇଯାଇଛି ।"

"ଏହିପରି ଭାରତର ଭିତରେ ଅସହାୟ ପରାଧୀନତାର ଏହି ନଗ୍ନ ଆତ୍ମମୃତପୂର୍ଣ୍ଣ ପ୍ରଦର୍ଶନରେ ସର୍ବସାଧାରଣଙ୍କ ଧନ ଓ ସମୟ ଅପବ୍ୟୟ କରିବାରେ ଯୋଗ ଦେଉଥିଲେ । ସାଙ୍ଗଠନିକ ନେତାମାନଙ୍କ ମନୋବୃତ୍ତିକୁ ବୁଝାଇବାରେ ମଧ୍ୟ ଆମେ ନିଜକୁ ଅସମର୍ଥ ମନେ କରୁଛୁ ଆମେ ଏହି ସମସ୍ତ ବିଷୟରେ ଚିନ୍ତା କରି ଆସିଛୁ । ଏହିଭଳି ଏସେମ୍ବ୍ଲିରେ 'ଟ୍ରେଡ୍ ସ୍ପିଟ୍ ଫଣ୍ଡ୍' ବିଧାୟକ ଆଗତ କରିବା ସମୟରୁ ହିଁ ଏହାର ଆଲୋଚନା ଉପରେ ଗୁରୁତ୍ୱ ଆରୋପ କରିଆସିଛୁ । ଶ୍ରମ ଆନ୍ଦୋଳନର ନେତାମାନଙ୍କ ଧାରାପଗତ ଆଦି ଭିନ୍ନଭିନ୍ନ କାର୍ଯ୍ୟକଳାପରୁ ଆମ ମନରେ ଏହି ଧାରଣା ଦୃଢ଼ୀଭୂତ ହୋଇଯାଇଛି ଯେ, ଏହି ସଂସ୍ଥାଦ୍ୱାରା ଭାରତର କୋଟି କୋଟି ଶ୍ରମିକ ଜନତାଙ୍କର କୌଣସି ଆଶା ଫଳବତୀ ହୋଇ ପାରିବ ନାହିଁ । ଏହାର ଅସ୍ତିତ୍ୱ କେବଳ ଏତିକି ପ୍ରମାଣିତ କରେ ଯେ, ଏହି ସଂସ୍ଥା ଶୋଷକଙ୍କ ଶୋଷଣ ଶକ୍ତି ତଥା ଅସହାୟ ଶ୍ରମିକଙ୍କ ଦାସତ୍ୱର ଏକ ଜୀବନ୍ତ ପ୍ରତୀକ ।"

"ଶେଷରେ ଦେଶର ପ୍ରତିନିଧିମାନଙ୍କୁ ଯେପରି ଭାବରେ ଅପମାନିତ କରାଗଲା, ତାହା ଆମକୁ ନିତାନ୍ତ ଅମାନୁଷିକ ଓ ନିର୍ଦ୍ଦୟ ମନେହେଉଛି । ଏହାଦ୍ୱାରା ଦେଶର ଅଗଣିତ ଶ୍ରମଜୀବୀ ନେତା ନିଜର ମୌଳିକ ଅଧିକାର ତଥା ଆର୍ଥିକ ଉନ୍ନତିର ଏକମାତ୍ର ସାଧନାରୁ ବଞ୍ଚିତ ହୋଇଛନ୍ତି ।"

"ଦେଶର ମୂକ ଓ ଯନ୍ତ୍ରଣାମୟ ଜୀବନ ଯାପନ କରୁଥିବା ଶ୍ରମିକ ଜନତାଙ୍କ କଷ୍ଟରେ ବ୍ୟଥିତ ଆମଭଳି କୌଣସି ବ୍ୟକ୍ତି ଏ ଦୃଶ୍ୟକୁ ଆନନ୍ଦରେ ଦେଖି ପାରିବ ନାହିଁ । ଏଥିରେ ଶୋଷଣର ବିଶେଷକରି ସବୁଠାରୁ ବଡ଼ ଶୋଷକ ସରକାରଙ୍କର ଆର୍ଥିକ ଭିତ୍ତିକୁ ଯେ ନିଜର ଲୁହ ଲହୁ ଦେଇ ସୁଦୃଢ଼ କରି ତୋଳିଛୁ, ତାହାରି ଚକ୍ର ହିଁ ଶୋଷଣ କରାଉଛି । ଏ ଅମାନୁଷିକ ଶୋଷଣ ଦେଖି କାହାର ହୃଦୟ ଦ୍ରବୀଭୂତ ନହେବ, ଅଥବା ଚିତ୍କାର ବା ହାହାକାରରେ କମ୍ପି ନ ଉଠିବ ! ବଡ଼ଲାଟଙ୍କ କାର୍ଯ୍ୟକାରିଣୀ ପରିଷଦର ଆଇନ୍‌ସଦସ୍ୟ ସ୍ୱର୍ଗୀୟ ଏସ୍ ଆର. ଦାସ ନିଜ ପୁତ୍ର ନିକଟକୁ ଲେଖିଥିବା ସେହି ପତ୍ରର ଶବ୍ଦ ଗୁଡ଼ିକ ଏଠି ଆମର ମନେପଡ଼ିଯାଉଛି । ଏହି ପତ୍ରରେ ସେ ଲେଖିଥିଲେ ଯେ, ଇଂଲଣ୍ଡକୁ ତାର ସ୍ୱପ୍ନରୁ ଜାଗ୍ରତ କରିବାକୁ ହେଲେ ତୋମାର ଆବଶ୍ୟକତା ରହିଛି । ସେଥିରୁ ପ୍ରେରଣା ପାଇ ଆମେ ନିଜ ତରଫରୁ ତଥା ଯେଉଁମାନଙ୍କ ପାଖରେ ହୃଦୟର ଗଭୀର ଓ ତୀବ୍ର ବ୍ୟଥାକୁ ପ୍ରକାଶ କରିବା ଏମିତି ଅନ୍ୟ କୌଣସି ଉପାୟ ନାହିଁ ସେହିମାନଙ୍କ ପକ୍ଷରୁ ଏହି ଦୃଢ଼ ବିରୋଧ ପ୍ରକାଶ କରୁଛୁ । ଆମର ଏକମାତ୍ର ଉଦ୍ଦେଶ୍ୟ ହେଉଛି ବଧିରଙ୍କୁ ଶୁଣିବା ପାଇଁ ବାଧ୍ୟ କରିବା ତଥା ଉପେକ୍ଷା କରୁଥିବା ବ୍ୟକ୍ତି ବିଶେଷଙ୍କୁ ଯଥାସମୟରେ ଚେତାବନୀ ଦେବା । ''

"ଆମେ ସମଗ୍ର ପରିସ୍ଥିତିକୁ ଯେଉଁଭଳି ଗୁରୁତ୍ୱଦେଇ ବୁଝିଛୁ, ଅନ୍ୟମାନେ ମଧ୍ୟ ଠିକ୍ ସେହିଭଳି ଅନୁଭବ କରିଛନ୍ତି । ଭାରତୀୟ ଜନ-ସମୁଦ୍ର ଉପରେ ଦେଖା ଦେଇଥିବା ତତ୍କାଳୀନ ଶାନ୍ତିର ନିମ୍ନଭାଗରେ ଯେ ଭୟାବହ ତୋଫାନ ଘନୀଭୂତ ହେବାରେ ଲାଗିଛି ଏବଂ ତାହା ଯେ ଦିନେ ନା ଦିନେ ଭୟଙ୍କର ଭାବରେ ଆତ୍ମପ୍ରକାଶ କରିପାରେ, ଏହା ସ୍ପଷ୍ଟ ହୋଇପଡ଼ିଛି । ଯେଉଁମାନେ ଆସନ୍ନ ଭୀଷଣ ସଙ୍କଟ ପ୍ରତି ଭ୍ରୂକ୍ଷେପ ନକରି ତେଜସ୍ୱାନ୍ ହୋଇ ଆଗେଇ ଚାଲିଛନ୍ତି, ଆମେ ସେମାନଙ୍କୁ ଦୃଢ଼ ଚେତାବନୀ ଦେଇସାରିଛୁ । ଯେଉଁ କାଳ୍ପନିକ, ଆଦର୍ଶବାଦୀ ଅହିଂସା ଯୁଗର ନିରର୍ଥକତା ସମ୍ବନ୍ଧରେ ଦେଶର ଯୁବଗୋଷ୍ଠୀଙ୍କ ଦୃଢ଼ ବିଶ୍ୱାସ ଜନ୍ମି ସାରିଛି, ଆମେ ତାହାର ପରିସମାପ୍ତି ଘଟାଇଅଛୁଁ । ମାନବତା ପ୍ରତି ଅସୀମ ପ୍ରେମ ଓ ସଦ୍ଭାବ ହେତୁ

ଆମ ଭଳି ଲକ୍ଷ ଲକ୍ଷ,କୋଟି କୋଟି, ଲୋକଙ୍କ ଭବିଷ୍ୟତ ଓ ଯନ୍ତ୍ରଣାର ବିନାଶ ପାଇଁ ଆମେ ଏହି ଚେତାବନୀ ଦେବାର ଉପାୟକୁ ଆପଣାର କରି ନେଇଛୁଁ ।"

"ଉପରୁ ଆମେ କାଳ୍ପନିକ, ଆଦର୍ଶବାଦୀ ଅହିଂସା ସମ୍ପର୍କରେ ଯାହା ଉଲ୍ଲେଖ କରିଛୁଁ ସେ ବିଷୟରେ ଏକ ସ୍ପଷ୍ଟ ଧାରଣା ଦେବା ଆବଶ୍ୟକ । ଶକ୍ତିକୁ ଯେତେବେଳେ ଆକ୍ରମଣାତ୍ମକ କାର୍ଯ୍ୟରେ ବିନିଯୋଗ କରାଯାଏ, ସେତେବେଳେ ତାହାକୁ ହିଂସା କୁହାଯାଏ ତେଣୁ ନୈତିକତା ଦୃଷ୍ଟିରୁ ଏହା ଅନୁଚିତ । କିନ୍ତୁ ଠିକ୍ ଉଦ୍ଦେଶ୍ୟରେ ଶକ୍ତିର ବିନିଯୋଗ କରାଗଲେ ନୈତିକତା ଦୃଷ୍ଟିରୁ ତାର ଯଥାର୍ଥ ପ୍ରତିପାଦିତ ହୋଇଥାଏ । ଶକ୍ତିର ପୂର୍ଣ୍ଣ ଉଚ୍ଛେଦ କାଳ୍ପନିକ ଅଟେ । ବର୍ତ୍ତମାନ ଦେଶରେ ଯେଉଁ ନୂତନ ଆନ୍ଦୋଳନ ଆରମ୍ଭ ହୋଇଛି ଏବଂ ଯେଉଁଥିପାଇଁ ଆମେ ଚେତାବନୀ ଦେଇ-ସାରିଛୁଁ, ତାକୁ ପ୍ରେରଣ ଯୋଗାଉଛନ୍ତି ଗୁରୁ ଗୋବିନ୍ଦ ସିଂହ ଓ ଶିବାଜୀ, କମାଲ୍ ପାଶା ଓ ରିଜା ଖା, ଓ୍ୱାଶିଂଟନ୍ ଓ ଗାରିବାଲ୍ଡି, ଲଫାୟେଟ୍ ଓ ଲେନିନ୍ । ବିଦେଶୀ ଶାସକ ତଥା ଭାରତୀୟ ରାଜନୈତିକ ନେତାମାନେ ମଧ୍ୟ ଏହି ନୂତନ ଆନ୍ଦୋଳନ ପ୍ରତି ଚକ୍ଷୁ କର୍ଣ୍ଣ ବନ୍ଦ କରି ଦେଇଥିବାରୁ ଏ ଦିଗରେ ସେମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପାଇଁ ସେମାନଙ୍କୁ ଦୃଢ଼ ଚେତାବନୀ ଦେବାକୁ ଆମେ ଆମର କର୍ତ୍ତବ୍ୟ ବୋଲି ଭାବି ନେଇଛୁଁ ।"

"ଏ ପର୍ଯ୍ୟନ୍ତ ଆମେ ବିଚାରାଧୀନ ଘଟଣାଗୁଡ଼ିକର ନେପଥ୍ୟରେ କାର୍ଯ୍ୟ କରୁଥିବା ବିଷୟଗୁଡ଼ିକ ଆଲୋଚନା କରି ଆସିଲୁଁ । ବର୍ତ୍ତମାନ ଆମେ କହିବାକୁ ଚାହିଁ ଏହାଦ୍ୱାରା ଆମେ କ'ଣ ଚାହୁଁଥିଲୁଁ ।"

"କହିବା ବାହୁଲ୍ୟ ଯେ, ଏସେମ୍ବ୍ଲିରେ ଘଟିଥିବା ବୋମା ବିସ୍ଫୋରଣ ଦ୍ୱାରା ଯେଉଁମାନେ ସାମାନ୍ୟ ଆଘାତ ପାଇଲେ ସେମାନଙ୍କ ବା ଅନ୍ୟ କାହାରି ବିରୁଦ୍ଧରେ ଆମ ମନରେ କୌଣସି ଦୁର୍ଭାବନା ବା ଦ୍ୱେଷ ନାହିଁ । ବରଂ ଆମେ ଏହା ସ୍ପଷ୍ଟ କହି ଦେବାକୁ ଚାହୁଁ ଯେ, ଆମେ ମାନବ ଜୀବନକୁ ଏତେ ପବିତ୍ର ମନେକରୁଁ, ଯାହା ଭାଷାରେ ବର୍ଣ୍ଣନା କରାଯାଇ ନ ପାରେ । କେବଳ ସେତିକି ନୁହେଁ, ଅନ୍ୟ କାହାରିକୁ ଆଘାତ

କରିବା ପୂର୍ବରୁ ଆମେ ମାନବତାର ସେବାରେ ନିଜର ପ୍ରାଣୋତ୍ସର୍ଗ କରିବାକୁ ଅଧିକ ପସନ୍ଦ କରିବୁଁ । ଆମେ ବିନା ଉଦ୍ଦେଶ୍ୟରେ ସାମ୍ରାଜ୍ୟବାଦୀ ସରକାରଙ୍କ ବେତନଭୋଗୀ ସୈନିକମାନଙ୍କ ମଧ୍ୟରୁ କେହିବି ତାହାରି ଜୀବନ ନେବାକୁ ଚାହୁଁ ନାହୁଁ । ସେମାନେ ତ ମାନବ ଜୀବନର ସୁରକ୍ଷା ନିମନ୍ତେ ସର୍ବଦା ପ୍ରସ୍ତୁତ ରହିଛନ୍ତି । ଏହାଛଡ଼ା ଆମେ ତ ଜାଣି ଶୁଣି ଏସେମ୍ବ୍ଲି ଭବନରେ ବୋମା ପକାଇନାହୁଁ ବୋଲି ସ୍ୱୀକାର କରୁଛୁ । ଘଟଣା ତ ନିଜର କଥା ନିଜେ କହେ ; କିନ୍ତୁ ମନ୍ତବ୍ୟ ତ ଘଟଣାର ପରିଣାମରୁ ହିଁ ଜଣାପଡ଼େ, କାଳ୍ପନିକ ପରିସ୍ଥିତି ଓ ଅନୁମାନକୁ ଆଧାର କରି ନୁହେଁ । ସରକାରୀ ବିସ୍ଫୋରଣ-ବିଶେଷଜ୍ଞଙ୍କ ସାକ୍ଷ୍ୟ ପ୍ରଦାନ ସତ୍ତ୍ୱେ ଏସେମ୍ବ୍ଲି ଭବନରେ ଫିଙ୍ଗା ଯାଇଥିବା ବୋମାଦ୍ୱାରା କେବଳ ଗୋଟିଏ ଶୂନ୍ୟ ବେଞ୍ଚ୍ କ୍ଷତିଗ୍ରସ୍ତ ହୋଇଥିଲା ଏବଂ ଅଧ ଡଜନରୁ ମଧ୍ୟ କମ୍ ବ୍ୟକ୍ତି କ୍ଷୁଦ୍ର ସାମାନ୍ୟ ଆଘାତ ପାଇଥିଲେ । ସରକାରୀ ବୈଜ୍ଞାନିକ ଏହାକୁ ଏକ ବିସ୍ମୟ ବୋଲି ପ୍ରତିପାଦିତ କରିଥିଲେ ମଧ୍ୟ ଆମେ ଏଥିରେ ବୈଜ୍ଞାନିକ ପ୍ରକ୍ରିୟା ବ୍ୟତୀତ ଆଉ କିଛି ଦେଖିବାକୁ ପାଉ ନାହୁଁ । ପ୍ରଥମ କଥା ହେଉଛି ବୋମା ଦୁଇଟି ଡେସ୍କ୍ ଓ ବେଞ୍ଚ୍ ଦ୍ୱାରା ପରିବେଷ୍ଟିତ ଏକ ଖାଲି ଜାଗାରେ ହିଁ ପଡ଼ିଥିଲା । ଦ୍ୱିତୀୟ କଥା ହେଉଛି ବିସ୍ଫୋରଣ ସ୍ଥାନର ମାତ୍ର ଦୁଇ ଫୁଟ ଦୂରରେ ବସିଥିବା ଶ୍ରୀ ରାଓ, ଶ୍ରୀ ଶଙ୍କରଲାଲ ତଥା ସାର୍ ଜର୍ଜ ସୁଷ୍ଟର୍‌ଙ୍କୁ କୌଣସି ବିଶେଷ ଆଘାତ ଲାଗି ନଥିଲା । ସେମାନେ ସାମାନ୍ୟ ଭାବରେ ଖଣ୍ଡିଆ ଖାବରା ହୋଇ ପଡ଼ିଥିଲେ । ଯଦି ବୋମା ଭିତରେ ପ୍ରଚୁର ପରିମାଣରେ ପୋଟାସିୟମ୍ କ୍ଲୋରେଟ୍ ତଥା ପିକ୍ରେଟ୍ ଥାଆନ୍ତା ତେବେ ଏହି ବୋମା ବିସ୍ଫୋରଣ ଘେର ମଧ୍ୟସ୍ଥ ସମସ୍ତ ଦ୍ରବ୍ୟକୁ ଧ୍ୱସ୍ତ ବିଧ୍ୱସ୍ତ କରିବା ସଙ୍ଗେ ସଙ୍ଗେ ଏହାର କିଛି ଗଜ ଦୂରରେ ଥିବା ଘେର ମଧ୍ୟସ୍ଥ ବହୁ ବ୍ୟକ୍ତିଙ୍କୁ ଧରାଶାୟୀ କରି ଦେଇପାରିଥାଆନ୍ତା । ତାହାଛଡ଼ା ଯଦି ଏହି ବୋମାର ନିର୍ମାଣ ଆହୁରି ଭୀଷଣ ବିସ୍ଫୋରକ ପଦାର୍ଥ ଦ୍ୱାରା କରାଯାଇ ପାରିଥାଆନ୍ତା, ତଥା ଏଥିରେ କଣ୍ଟା ଓ ତୀକ୍ଷ୍ଣ ଛୁରୀ ଭର୍ତ୍ତି କରାଯାଇ ଥାଆନ୍ତା ତେବେ ଏ ବୋମା ବିସ୍ଫୋରଣ ଫଳରେ ଲେଜିସ୍ଲେଟିଭ୍ ଏସେମ୍ବ୍ଲିର ଅଧିକାଂଶ ସଦସ୍ୟ ନିଶ୍ଚିତ ଭାବରେ ମୃତ୍ୟୁବରଣ କରିଥାନ୍ତେ । ଏ କଥା

ବି ମନେ ରଖିବା ଉଚିତ ଯେ, ଯଦି ଆମେ ଚାହିଁଥାନ୍ତୁ ତାହା ହେଲେ ଆମେ ବହୁ ବିଶିଷ୍ଟ ସଦସ୍ୟମାନଙ୍କ ଦ୍ୱାରା ପରିପୂର୍ଣ୍ଣ ପରିଷଦ ବେଞ୍ଚ୍ ଉପରକୁ ମଧ୍ୟ ବୋମା ଫିଙ୍ଗି ପାରିଥାନ୍ତୁ । ଯାହାଙ୍କୁ ଏବଂ ଯାହାଙ୍କ କର୍ମଚାରୀଙ୍କୁ ଦେଶର ବିଶିଷ୍ଟ ନାଗରିକ ଘୃଣା କରୁଥିଲେ, ଆମେ ଚାହିଁଥିଲେ ସେହି ଜନ୍ ସାଇମନ୍‌ଙ୍କ ଉପରକୁ ଲକ୍ଷ୍ୟ କରି ବୋମା ଫିଙ୍ଗି ପାରିଥାନ୍ତୁ । ସାର୍ ସାଇମନ୍ ସେତେବେଳେ ଅଧ୍ୟକ୍ଷଙ୍କ ଗେଲେରୀରେ ବସିଥିଲେ । କିନ୍ତୁ ତାଙ୍କ ଉପରେ ଆମର କିଛି କରିବାର ନ ଥିଲା । ଅଧିକନ୍ତୁ ଯେଉଁଥି-ପାଇଁ ବୋମାଟିକୁ ପ୍ରସ୍ତୁତ କରାଯାଇଥିଲା, ଏହାଦ୍ୱାରା ତାହାଠାରୁ ଅଧିକ କ୍ଷତି ଘଟି ନାହିଁ । ସମସ୍ତ ଘଟଣା ସମ୍ବନ୍ଧରେ ବିଶେଷ ଆଶ୍ଚର୍ଯ୍ୟ ବିଷୟ ଏହି ଯେ, ଏହାକୁ ଏପରି ସ୍ଥାନକୁ ଫିଙ୍ଗା ଯାଇଥିଲା ଯଦ୍ୱାରା କୌଣସି ଅବାଞ୍ଛିତ କ୍ଷତି ନ ଘଟାଇ ଏହା କେବଳ ନିଜର ଉଦ୍ଦିଷ୍ଟ କାର୍ଯ୍ୟ ସାଧନ କରିଥିଲା ।"

"ଆମେ ଯାହା କିଛି କରିଛୁ ତା ପାଇଁ ଦଣ୍ଡ ଭୋଗ କରିଯିବୁଁ ବୋଲି ଜାଣି ଶୁଣି ଶେଷରେ ଆତ୍ମସମର୍ପଣ କରିଥିଲୁଁ । ଏହା ସହିତ ସାମ୍ରାଜ୍ୟବାଦୀ ଶୋଷକବର୍ଗଙ୍କୁ ଜଣାଇ ଦେବାକୁ ଚାହୁଁଥିଲୁଁ ଯେ, କେତେକ ବ୍ୟକ୍ତିବିଶେଷଙ୍କୁ ଦବାଇ ରଖିଲେ ସମଗ୍ର ଦେଶକୁ ଜବ୍ଦ କରି ହେବ ନାହିଁ 'ଲେଟର୍ସ ଡି କେଚେଟ୍' (୧) ତଥା 'ବେଷ୍ଟାଇଲ୍ସ୍' (୨) ଫ୍ରାନ୍ସର ବିପ୍ଳବାତ୍ମକ ଆନ୍ଦୋଳନକୁ ଦବେଇ ପାରିନାହିଁ ବୋଲି ଯେଉଁ ଶିକ୍ଷା ରେ ଦର୍ଶାଯାଇଛି, ଆମେ ତାହା ଉପରେ ମଧ୍ୟ ଜୋର ଦେବାକୁ ଚାହୁଁଥିଲୁଁ । ଫାଶୀ ଏବଂ ସାଇବେରିଆର ନିର୍ବାସନ ଦଣ୍ଡ ରୁଷ ଆନ୍ଦୋଳନକୁ ବନ୍ଦ କରି ପାରି ନ ଥିଲା ।

---

(୧) ୧୭୮୯ ମସିହାରେ ଘଟିଥିବା ଫରାସୀ ବିପ୍ଳବର ପୂର୍ବକାଳରେ ବୋର୍ବନ୍ ସମ୍ରାଟ୍‌ମାନଙ୍କ ଶାସନ ସମୟରେ 'ଲେଟର୍ସ୍ ଡି କେଚେ-ଟର୍ସ'ର ପ୍ରଭାବ ସର୍ବତ୍ର ପରିଲକ୍ଷିତ ହେଉଥିଲା । ଏହାଦ୍ୱାରା ଫ୍ରାନ୍ସର ପ୍ରଭାବଶାଳୀ ଲୋକମାନେ ଦେଶର ଯେ କୌଣସି ଲୋକଙ୍କୁ ସହଜରେ ଗିରଫ କରି ପାରୁଥିଲେ ଏବଂ ବିନା ବିଚାରରେ ତାଙ୍କୁ

"ଗଢ଼ା ଯାଇଥିବା ଅଥବା ସନ୍ଧାନ ମିଳିଥିବା ଷଡ଼ଯନ୍ତ୍ରଗୁଡ଼ିକର ପ୍ରସ୍ତୁତିପୂର୍ଣ୍ଣ ସନ୍ତ୍ରାସବାଦୀ କାର୍ଯ୍ୟ ତଥା ନୂତନ ଆଦର୍ଶ କାମନା କରୁଥିବା ଯୁବକମାନଙ୍କୁ ଜେଲରେ ପୁରାଇବାଦ୍ୱାରା ଆଗେଇ ଚାଲିଥିବା ଆନ୍ଦୋଳନର ପଥରୁଦ୍ଧ କରାଯାଇ ନ ପାରେ । କିନ୍ତୁ ଯଥାସମୟରେ ଦିଆ ଯାଇଥିବା ଚେତାବନୀ ବିଷୟରେ ଯଦି ସେ ( ସରକାର ) ଉଦାସୀନ ନ ରହନ୍ତି ତେବେ ଏହାଦ୍ୱାରା ହେବାକୁ ଥିବା ଲୋକକ୍ଷୟ ତଥା ବ୍ୟାପକ ଯନ୍ତ୍ରଣାରୁ ମୁକ୍ତି ମିଳିପାରିବ । ଏହି ଚେତାବନୀ ଦେବା ଦାୟିତ୍ୱ ଆମେ ନିଜେ ବହନ କରିଥିଲୁଁ ଏବଂ ଆମର କର୍ତ୍ତବ୍ୟ ପୂରଣ ହୋଇସାରିଛି ।"

**ବିପ୍ଳବ କଣ ?**

"ବିପ୍ଳବ ସମ୍ବନ୍ଧରେ ତାଙ୍କର ଧାରଣା କ'ଣ ବୋଲି ନିମ୍ନ ଅଦାଲତରେ ଭଗତ୍ ସିଂହଙ୍କୁ ପଚରା ଯାଇଥିଲା । ଏ ପ୍ରଶ୍ନର ଉତ୍ତରରେ ଆମେ କହିବୁଁ ଯେ, ବିପ୍ଳବର ଅର୍ଥ କେବଳ ଉଲ୍ଲେଖଯୋଗ୍ୟ ରକ୍ତ ସଂଘର୍ଷ ଅଥବା ବ୍ୟକ୍ତିଗତ ସନ୍ତ୍ରାସବାଦୀ ସଂଘର୍ଷ ଘଟଣା ନୁହେଁ । ବିପ୍ଳବ ବୋମା କିମ୍ବା ପିସ୍ତଲର ଯୁଗ ମଧ୍ୟ ନୁହେଁ । ବିପ୍ଳବଦ୍ୱାରା ଆମେ ଏକଥା ବୁଝୁଁ ଯେ, ମୂର୍ତ୍ତିମନ୍ତ ଭାବରେ ଅନ୍ୟାୟ ଦମନରେ ପ୍ରତିଷ୍ଠିତ ବ୍ୟବସ୍ଥାର ପରିବର୍ତ୍ତନ

---

ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦୀଙ୍କରେ ଅଟକାଇ ରଖି ପାରୁଥିଲେ । ଏହା ବୋର୍ବନ୍ ଶାସନର ଏକ କଳଙ୍କରୂପେ ପରିଗଣିତ ହୁଏ ।

(୨) 'ବେଷ୍ଟାଇଲ୍ସ' ଥିଲ ଅତ୍ୟାଚାରୀ ବୋରବନ୍ ଶାସକଙ୍କ ଅତ୍ୟାଚାରର ପୀଠସ୍ଥଳୀ । ବେଷ୍ଟାଇଲ୍ସର କାରାଗୃହ ମଧ୍ୟରୁ ବହୁ ଫରାସୀ ନାଗରିକ ନରକଯନ୍ତ୍ରଣା ଭୋଗ କରୁଥିଲେ । ୧୭୮୯ ମସିହା ଏପ୍ରିଲ ୧୪ ତାରିଖ ଦିନ ଫ୍ରାନ୍ସର ବିପ୍ଳବୀମାନେ ଏହି କାରାଗାରକୁ ଭାଙ୍ଗି ଧୂଳିସାତ୍ କରି ଦେଇଥିଲେ । ସେହି ଦିନଟିକୁ ଫ୍ରାନ୍ସର ଜାତୀୟ ଦିବସ ରୂପେ ପାଳନ କରାଯାଏ ।

ହେବା ଉଚିତ । ଉତ୍ପାଦକ ଏବଂ ଶ୍ରମିକ ସମାଜ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଅଂଶ ହେଲେ ମଧ୍ୟ ସେମାନେ ସେମାନଙ୍କ ଶୋଷକମାନଙ୍କଦ୍ୱାରା ସେମାନଙ୍କ ପରିଶ୍ରମର ଫଳ ତଥା ମୌଳିକ ଅଧିକାରରୁ ବଞ୍ଚିତ ହେଉଛନ୍ତି । ଏକ ପକ୍ଷରେ ଯେଉଁ କୃଷକ ସମସ୍ତଙ୍କ ପାଇଁ ଅନ୍ନ ତିଆରି କରୁଛି, ସେ ସପରିବାର ଭୋକରେ ମରୁଛି । ଯେଉଁ ବ୍ୟକ୍ତି ବୟନ ଦ୍ୱାରା ସାରା ପୃଥିବୀ ବଜାରକୁ ସୂତା ଓ ଅନ୍ୟାନ୍ୟ ବସ୍ତ୍ର ତିଆରି କରି ଯୋଗାଉଛି ସେ ନିଜପାଇଁ ଓ ନିଜ ପିଲାମାନଙ୍କ ପାଇଁ ମଧ୍ୟ ଉପଯୁକ୍ତ ବସ୍ତ୍ର ଯୁଟାଇ ପାରୁନାହିଁ । ଯେଉଁ ରାଜମିସ୍ତ୍ରୀ, କୁମ୍ଭକାର ଏବଂ ବଢ଼େଇ ବିଶାଳ ପ୍ରାସାଦ ନିର୍ମାଣ କରନ୍ତି, ସେମାନଙ୍କୁ ଆବର୍ଜନାମୟ ବସ୍ତିରେ ଜୀବନ ବିତାଇବାକୁ ପଡ଼େ । ଅନ୍ୟ ପକ୍ଷରେ ପୁଞ୍ଜିପତି ଏବଂ ସମାଜର ଶୋଷକବର୍ଗ ଆପଣା ଅଭିଳାଷ ପୂର୍ଣ୍ଣ କରିବା ପାଇଁ ଲକ୍ଷ ଲକ୍ଷ, କୋଟି କୋଟି ଟଙ୍କା ଖର୍ଚ୍ଚ କରି ଦେଉଛନ୍ତି । ଏ ବିରାଟ ବୈଷମ୍ୟ ଏବଂ ଦୁଃସ୍ଥିତି ସମାଜକୁ ଭୟାବହ ଅରାଜକତା ଆଡ଼କୁ ଠେଲିବାକୁ ଲାଗିଛି । ଏ ଅବସ୍ଥା ଅଧିକ ସମୟ ପର୍ଯ୍ୟନ୍ତ ତିଷ୍ଠି ରହିପାରିବ ନାହିଁ ଏବଂ ଏହା ମଧ୍ୟ ସ୍ପଷ୍ଟ ଯେ, ବର୍ତ୍ତମାନ ସମାଜ-ବ୍ୟବସ୍ଥା ଏକ ପ୍ରଚଣ୍ଡ ବିସ୍ଫୋରଣମୁଖୀ ଆଗ୍ନେୟଗିରିର ମୁଖ ଉପରେ ଥାଇ ପୁଣି ଅନୁଚିତ ଭାବରେ ଭୋଗବିଳାସରେ ମଗ୍ନ ରହୁଛି, ତଥା କେବଳ କୋଟି-କୋଟି ଶୋଷିତ ନୁହନ୍ତି, ଏହି ଶୋଷିତମାନଙ୍କର ନିର୍ଦ୍ଦୋଷ ସନ୍ତାନମାନେ ମଧ୍ୟ ଏବେ କ୍ଷୁଧାର ଦାରୁଣ ଯନ୍ତ୍ରଣା ମଧ୍ୟରେ ହାହାକାର କରିଉଠିଛନ୍ତି । ବେଳ ଥାଉଁ ଥାଉଁ ଯଦି ଏଥିରୁ ସେମାନଙ୍କର ପ୍ରାଣ ରକ୍ଷା କରି ନ ଯାଏ, ତେବେ ପ୍ରଚଳିତ ସମାଜ ବ୍ୟବସ୍ଥାର ସମଗ୍ର ସ୍ୱରୂପ ଦୋହଲି ଉଠିବ । ଏ ଅବସ୍ଥାର ମୌଳିକ ପରିବର୍ତ୍ତନ ଆବଶ୍ୟକ ଏବଂ ଯେଉଁମାନେ ଏକଥା ବୁଝିଛନ୍ତି, ସେମାନଙ୍କର ଏ ସମାଜକୁ ସମାଜବାଦୀ ପୃଷ୍ଠଭୂମି ଉପରେ ପୁନର୍ଗଠିତ କରିବା ଉଚିତ । ଯେଉଁ ପର୍ଯ୍ୟନ୍ତ ଏହା କରାଯାଇନାହିଁ, ସେ ପର୍ଯ୍ୟନ୍ତ ମଣିଷଦ୍ୱାରା ମଣିଷକୁ ଶୋଷଣ କରିବା ଏବଂ ରାଷ୍ଟ୍ରଦ୍ୱାରା ରାଷ୍ଟ୍ରକୁ ଶୋଷଣ କରିବା, ଯାହାକି ଆଜି ପୃଥିବୀରେ ସାମ୍ରାଜ୍ୟବାଦ ନାମରେ ସନ୍ତାପ ସୃଷ୍ଟି କରୁଛି, ସେ ବ୍ୟବସ୍ଥାର ସମାପ୍ତି ଘଟିବନାହିଁ । ମାନବ ସମାଜକୁ ଆସନ୍ନ ଭୟାବହ ରକ୍ତପାତ ଏବଂ ଅଯଥା ଯନ୍ତ୍ରଣାରୁ ରକ୍ଷା କରାଯାଇ ପାରିବ

ନାହିଁ, ଏ ଭାବରେ ଯେପର୍ଯ୍ୟନ୍ତ କାର୍ଯ୍ୟାନୁଷ୍ଠାନ କରି ନ ଯାଉଛି, ସେ ପର୍ଯ୍ୟନ୍ତ ସମସ୍ତ ଯୁଦ୍ଧ ବନ୍ଦ କରି ବିଶ୍ୱବ୍ୟାପୀ ଶାନ୍ତିପୂର୍ଣ୍ଣ ଯୁଗ ସମ୍ବନ୍ଧରେ କଥାବାର୍ତ୍ତା କେବଳ ଫମ୍ପା ପ୍ରଳାପ ଓ ପ୍ରବଞ୍ଚନା ହୋଇ ରହିବ । ନୂତନ ଅବସ୍ଥାକୁ ଆଧାର କରି ଧ୍ୱଂସମୁଖୀ ସମାଜର ପୁନର୍ଗଠନକୁ ହିଁ ଆମେ ବିପ୍ଳବବୋଲି କହୁଁ ଏଥିରେ ଶ୍ରମିକ-ଜନତାଙ୍କ ଆଧିପତ୍ୟକୁ ସମ୍ମାନ ମିଳିବ ଏବଂ ଏହାର ଫଳ ସ୍ୱରୂପ ବିଶ୍ୱ-ସଙ୍ଘର ପ୍ରତିଷ୍ଠା ହୋଇ ପୃଥିବୀରେ ଥିବା ପୁଞ୍ଜିବାଦ, ବାରମ୍ବାର ଯୁଦ୍ଧ, ଯନ୍ତ୍ରଣା ଏବଂ ସମାଜରେ ଯେତେବେଳେ ସେତେବେଳେ ସୃଷ୍ଟି ହେଉଥିବା ଅବସ୍ଥାର ପରିସମାପ୍ତି ଘଟିବ । ”

ଏହାହିଁ ଆମର ଆଦର୍ଶ ଏବଂ ଏ ଆଦର୍ଶରୁ ପ୍ରେରଣା ଲାଭକରି ଆମେ ଯଥେଷ୍ଟ ଦୃଢ଼ ଓ ଉଚିତ ଚେତାବନୀ ଦେଉଛୁଁ । ଯଦି ଆମର ଏ ଚେତାବନୀ ଅଜ୍ଞାତ ରହିଯାଏ, ତଥା ପ୍ରବଳ ଭାବରେ ତେଜସ୍ୱାନ ହୋଇ ଉଠୁଥିବା ପ୍ରାକୃତିକ ଶକ୍ତିଗୁଡ଼ିକ ପଥରେ ସରକାର ବାଧା ସୃଷ୍ଟି କରନ୍ତି, ତେବେ ଭୀଷଣ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିବ । ଏ ସଂଘର୍ଷ ତା ପଥରେ ବା ସ ବାଧାବିଘ୍ନର ସମାପ୍ତି ଘଟାଇବ ଏବଂ ଶ୍ରମିକଜନତାଙ୍କ ଆଧିପତ୍ୟ ସ୍ଥାପନ କରି ବିପ୍ଳବର ଆଦର୍ଶକୁ ଚରିତାର୍ଥ କରିବ । ବିପ୍ଳବ ମାନବ ଜାତିର ଅବିଚ୍ଛିନ୍ନ ଅଧିକାର ଅଟେ । ଏ ପ୍ରକାର ସ୍ୱାଧୀନତା ପ୍ରତ୍ୟେକଙ୍କର ଜନ୍ମ-ଗତ ଅଧିକାର । ଶ୍ରମିକ ହେଉଛି ସଂସାରର ବାସ୍ତବିକ ଆଧାରଶିଳା । ଜନତାଙ୍କର ସାର୍ବଭୌମ ସମୃଦ୍ଧି ଶ୍ରମିକମାନଙ୍କର ଚରମ ଲକ୍ଷ୍ୟ ଏ ଆଦର୍ଶ ଏବଂ ଏ ବିଶ୍ୱାସର ପ୍ରତିଷ୍ଠା ପାଇଁ ଆମେ ସମସ୍ତ ଯାତନାକୁ ଆନନ୍ଦରେ ସ୍ୱାଗତ ଜଣାଉଛୁଁ ।

ଏହି ବିପ୍ଳବ-ବେଦୀ ଉପରେ ଆମେ ଆମର ଯୌବନର ଧୂପ, ଦୀପ ଜଳାଇଅଛୁଁ, କାରଣ ଏହି ମହାନ୍ ଆଦର୍ଶ ପାଇଁ ବଳିଦାନ ଯେତେବଡ଼ ହେଲେ ମଧ୍ୟ ତାହା ତୁଚ୍ଛ ବିବେଚିତ ହୁଏ । ଆମେ ବିପ୍ଳବର ଆଗମନ ପ୍ରତୀକ୍ଷାରେ ହିଁ ସନ୍ତୁଷ୍ଟ ଅଛୁ । 'ଇନ୍ କିଲାବ୍ ଜିନ୍ଦାବାଦ' । ”



## ବିପ୍ଳବର ସପ୍ତମ ପର୍ବ—ଅନଶନ

ଏସେମ୍ବ୍ଲି ବୋମାକାଣ୍ଡରେ ନିର୍ବାସନ ଦଣ୍ଡାଦେଶ ପାଇବାର କିଛି ଦିନ ପରେ ରାଜନୈତିକ ବନ୍ଦୀମାନଙ୍କ ଅବସ୍ଥା ସୁଧାରିବା ପାଇଁ ସର୍ଦ୍ଦାର ଭଗତ ସିଂହ ଜେଲ୍ ମଧ୍ୟରେ ଅନଶନ-ଆନ୍ଦୋଳନ ଆରମ୍ଭ କରିଦେଲେ । ଏ ସମ୍ବାଦ ଜନସାଧାରଣଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଆଗରୁ ମଧ୍ୟ ରାଜନୈତିକ ବନ୍ଦୀମାନେ ଅନଶନ କରିଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକଙ୍କର ଏପାଇଁ ମୃତ୍ୟୁ ମଧ୍ୟ ହୋଇଥିଲା । ଉତ୍ତରପ୍ରଦେଶର ଶ୍ରୀ ରାମରକ୍ଷାଙ୍କ ଅନଶନ ଏହାର ଜ୍ୱଳନ୍ତ ଉଦାହରଣ । ତାଙ୍କୁ ଆଣ୍ଡାମାନ୍ ପଠାଇଦେବା ସମୟରେ ତାଙ୍କ ସ୍କନ୍ଧରୁ ତାଙ୍କର ଯଜ୍ଞୋପବୀତ ବାହାର କରି ଦିଆଯାଇଥିଲା । ଏଥିରେ ସେ ଦୃଢ଼ ଭାବରେ ଜଣାଇ ଦେଇଥିଲେ ଯେ, ଯେପର୍ଯ୍ୟନ୍ତ ତାଙ୍କୁ ଉପବୀତ ଧାରଣ କରିବାକୁ ଦିଆଯାଇ ନାହିଁ, ସେ ପର୍ଯ୍ୟନ୍ତ ସେ ଅନ୍ନ ଜଳ ଗ୍ରହଣ କରିବେ ନାହିଁ । ସେ ସମୟର କ୍ରୂର, ହୃଦୟହୀନ କର୍ତ୍ତୃପକ୍ଷ ଏତିକି କଥା ରକ୍ଷିଲେ ନାହିଁ । ଫଳରେ ଏହି ବ୍ରାହ୍ମଣ ବିପ୍ଳବୀ ଜଣଙ୍କୁ ଶେଷ ପର୍ଯ୍ୟନ୍ତ ନିଜ ପ୍ରତିଜ୍ଞାରେ ଅଟଳ ରହି ବିନା ଅନ୍ନ ଜଳରେ ତିଳ ତିଳ ହୋଇ ମରିବାକୁ ପଡ଼ିଥିଲା । ଆଣ୍ଡାମାନ୍ ଦ୍ୱୀପରେ ମଧ୍ୟ ରାଜନୈତିକ ବନ୍ଦୀମାନେ ଅନଶନ କରିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକଙ୍କର ଯଣା ଏହିପରି ଶୋଚନୀୟ ହୋଇଥିଲା । କେବଳ କାକୋରି-ମାମଲାରେ ଅଭିଯୁକ୍ତ ବନ୍ଦୀମାନଙ୍କ ଅନଶନକୁ ଛାଡ଼ିଦେଲେ, ଅନ୍ୟ ବନ୍ଦୀମାନଙ୍କ ଅନଶନ ଜେଲ୍ ଜୀବନର କୌଣସି ନା କୌଣସି ଉନ୍ନତି ପାଇଁ ଉଦ୍ଦିଷ୍ଟ ନ ଥିଲା କିନ୍ତୁ ଏ ସମସ୍ତ ଅନଶନ ଦ୍ୱାରା ଜନସାଧାରଣ ସେତେ ବେଶି ପ୍ରଭାବିତ ହୋଇ ନଥିଲେ । ଭଗତ ସିଂହଙ୍କ ଅନଶନରେ ପ୍ରଥମଥର ପାଇଁ ଦେଶର ଜନସାଧାରଣ ରାଜନୈତିକ ବନ୍ଦୀମାନଙ୍କ ଅବସ୍ଥାର ଉନ୍ନତି ବିଷୟରେ ଚିନ୍ତା କରିବାକୁ ଲାଗିଲେ । ଭଗତ ସିଂହ ଏବଂ ବଟୁକେଶ୍ୱର ଦତ୍ତ କର୍ତ୍ତୃପକ୍ଷଙ୍କୁ ଦୃଢ଼ ଭାବରେ ଜଣାଇ ଦେଇଥିଲେ ଯେ, ବିଦେଶୀ ଶାସନ ବିରୁଦ୍ଧରେ ସଂଘର୍ଷ କରୁଥିବା ରାଜନୈତିକ

ବନ୍ଦୀମାନଙ୍କୁ ବନ୍ଦୀ ଗୃହରେ ଯେତେ ନ ଦେଇ ସ୍ୱତନ୍ତ୍ର ସୁବିଧା ସୁଯୋଗ ମିଳିବା ଏକାନ୍ତ ବିଧେୟ । ଏହି ଉଦ୍ଦେଶ୍ୟ ସାଧନ ପାଇଁ ସେମାନେ ଅନଶନ ଆରମ୍ଭ କରିଥିଲେ ।

ପୌରାଜନ୍ ଭଗତ୍ ସିଂହ ଏବଂ ବଟୁକେଶ୍ୱର ଦତ୍ତଙ୍କ ଦଣ୍ଡାଦେଶ ଶୁଣାଇବା ପୂର୍ବରୁ ସେମାନେ ଦୁହେଁ ଜେଲ୍‌ରେ ରାଜନୈତିକ ବନ୍ଦୀମାନଙ୍କ ପ୍ରତି କରାଯାଇଥିବା ଅମାନୁଷିକ ବ୍ୟବହାର ବିରୁଦ୍ଧରେ ଅନଶନ କରିବେ ବୋଲି ଦେଶବାସୀଙ୍କୁ ଜଣାଇ ଦେଇଥିଲେ । ତେଣୁ ବିଭିନ୍ନ ସମ୍ବାଦପତ୍ର ଓ ଅନ୍ୟାନ୍ୟ ପତ୍ରପତ୍ରିକା ଏହାକୁ ସମର୍ଥନ ଜଣାଇ ଲେଖାମାନ ପ୍ରକାଶ କଲେ । ପତ୍ରପତ୍ରିକା ଗୁଡ଼ିକରେ ଏହି ଉଦାରତାପୂର୍ଣ୍ଣ କାର୍ଯ୍ୟଦ୍ୱାରା ଆନ୍ଦୋଳନ ଆରମ୍ଭ ହୋଇଗଲା ।

ସେ ସମୟରେ ରାଜନୈତିକ ବନ୍ଦୀମାନଙ୍କ ପ୍ରତି ଜେଲ୍‌ରେ କି ପ୍ରକାର ବ୍ୟବହାର କରାଯାଉଥିଲା, ତାହା ସାଧାରଣ ଲୋକଙ୍କର କଳ୍ପନାତୀତ । ଜେଲ୍ ମଧ୍ୟରେ ସେମାନଙ୍କର ଜୀବନ କେତେ ଯନ୍ତ୍ରଣାଦାୟକ ଥିଲା ତାହାର ପ୍ରମାଣ ଗୋଟିଏମାତ୍ର ଉଦାହରଣରୁ ବେଶ୍ ଜଣାପଡ଼େ । ୧୯୧୬ ମସିହାରେ ବନାରସ୍-ଷଡ଼ଯନ୍ତ୍ର ମାମଲାରେ ଯେଉଁ ଷୋଳ ଜଣ ଜଣ ବ୍ୟକ୍ତିଙ୍କୁ କାରାଦଣ୍ଡ ଦିଆଯାଇଥିଲା, ସେମାନଙ୍କ ମଧ୍ୟରୁ ମାତ୍ର ଦୁଇବର୍ଷ ମଧ୍ୟରେ ଏଗାର ଜଣଙ୍କ ମୃତ୍ୟୁ ସେହି ଜେଲ୍‌ଖାନା ଭିତରେ ହିଁ ଘଟିଥିଲା ଏବଂ ଆଉ ଜଣେ ପାଗଳ ହୋଇ ଯାଇଥିଲେ । ଏହି ବନ୍ଦୀମାନଙ୍କ ପ୍ରତି ଜେଲ୍ କର୍ତ୍ତୃପକ୍ଷ ଇନ୍‌ସପେକ୍ଟର୍ ଜେନେରାଲ୍‌ଙ୍କ ଗୋପନୀୟ ଆଦେଶପତ୍ରରୁ ଜଣାପଡ଼େ ଯେ, ଅନ୍ୟ ବନ୍ଦୀମାନଙ୍କ ଠାରୁ ଏମାନଙ୍କୁ ଦିନ ରାତି ଅଲଗା ରଖାଯାଇଥିଲା । ଏପ୍ରକାର ଆଦେଶର ଉଦ୍ଦେଶ୍ୟ ବେଶ୍ ସ୍ପଷ୍ଟ ଭାବରେ ଅନୁମାନ କରିହୁଏ । ଜେଲ୍‌ରେ କେବଳ ବନ୍ଦୀମାନେ ହିଁ ରହନ୍ତି । ବାହାର ଦୁନିଆ ସହିତ ସେମାନଙ୍କର ସମ୍ପର୍କ ନଥିଲେ ମଧ୍ୟ ସେମାନେ ନିଜ ନିଜ ମଧ୍ୟରେ ଆଳାପ ଆଲୋଚନା କରି ସମୟ ବିତାଇ ଦିଅନ୍ତି । କିନ୍ତୁ ଏହି ରାଜନୈତିକ ବନ୍ଦୀମାନଙ୍କୁ ଅଲଗା ଅଲଗା କରି ଅନ୍ଧକାର ପ୍ରକୋଷ୍ଠ ମଧ୍ୟରେ

ଯତୀନ୍ଦ୍ରନାଥଙ୍କୁ ମୁକ୍ତ କଲେନାହିଁ । ଫଳତଃ ଭଗତ୍ ସିଂହ, ବଟୁକେଶ୍ୱର ଦତ୍ତ ଏବଂ ଅନ୍ୟ ଚାରିଜଣ ବିପ୍ଳବୀ ସଦସ୍ୟ ପୁଣି ଅନଶନ ଆରମ୍ଭ କରିଦେଲେ । କିନ୍ତୁ ସେମାନେ ଏଥିପାଇଁ ଦୀର୍ଘକାଳ ଧରି ସେତେ ଯନ୍ତ୍ରଣା ଭୋଗକଲେ ତାର କୌଣସି ସୁଫଳ ମିଳିଲା ନାହିଁ । ଇତିମଧ୍ୟରେ ଜେଲ୍ ଭିତରେ ଯତୀନ୍ଦ୍ରନାଥ ଦାସଙ୍କ ମୃତ୍ୟୁ ହୋଇଗଲା ।

ବର୍ତ୍ତମାନ ଭଗତ୍ ସିଂହ ଏବଂ ତାଙ୍କ ସହଯୋଗୀମାନେ ଚିନ୍ତାକରି ଦେଖିଲେ ଯେ, ଜେଲ ଯାଞ୍ଚ୍ ସମିତି ବନ୍ଦୀମାନଙ୍କୁ ଯାହା କିଛି ସୁବିଧା ଦେବାକୁ ରାଜି ହୋଇଥିଲେ, ତାହା ପ୍ରଥମ ସଂଘର୍ଷର ଫଳସ୍ୱରୂପ ପ୍ରାପ୍ତ ହେବ ଏବଂ ଏହାର ପ୍ରଭାବ କାକୋରୀ ମାମଲାରେ ବନ୍ଦୀ ହୋଇଥିବା ବ୍ୟକ୍ତି ତଥା ସାରା ଭାରତ ବର୍ଷର ରାଜନୈତିକ ବନ୍ଦୀମାନଙ୍କ ଉପରେ ନିଶ୍ଚୟ ପଡ଼ିବ । ତେଣୁ ସର୍ବସମ୍ମତିକ୍ରମେ ଅନଶନ-ଆନ୍ଦୋଳନ ସ୍ଥଗିତ ରଖାଗଲା ।



## ବିପ୍ଳବର ଅଷ୍ଟମ ପର୍ବ—ଲାହୋର ଷଡ଼ଯନ୍ତ୍ର

ଲାହୋର-ଷଡ଼ଯନ୍ତ୍ର ଭାରତୀୟ ବିପ୍ଳବୀ ଇତିହାସର ଏକ ଉଲ୍ଲେଖ-ଯୋଗ୍ୟ ଘଟଣା । ଏ ଷଡ଼ଯନ୍ତ୍ର ଭାରତ ସରକାରଙ୍କୁ ଭୟଭୀତ କରି ପକାଇଥିଲା । ଏଥିରୁ ସର୍ଦ୍ଦାର୍ ଭଗତ୍ ସିଂହ ଏବଂ ତାଙ୍କ ସହଯୋଗୀ ବିପ୍ଳବୀ ବୀରମାନଙ୍କ ସାହସ ତଥା ସୂକ୍ଷ୍ମ ବୁଦ୍ଧିମତ୍ତାର ଯଥେଷ୍ଟ ପରିଚୟ ମିଳେ । ଏହି ଷଡ଼ଯନ୍ତ୍ର ମାମଲାରେ ଜଡ଼ିତ ହୋଇ ବହୁ ବିପ୍ଳବୀ କାରାବରଣ କରିଥିଲେ ମଧ୍ୟ ଏହା ଯେ ତତ୍କାଳୀନ ବିଦେଶୀ ସରକାରଙ୍କ ମୂଳଦୁଆକୁ ଦୋହଲାଇ ଦେଇଥିଲା, ତାହା ଅସ୍ୱୀକାର କରିହେବ ନାହିଁ ।

ଅନଶନ ଆନ୍ଦୋଳନ ଯେତେବେଳେ ସମାପ୍ତ ହେଲା ଏବଂ ପୂର୍ବ ମାମଲାର ଶୁଣାଣି ଆରମ୍ଭ ହେଲା, ସେତେବେଳେ ସର୍ଦ୍ଦାର ଭଗତ୍ ସିଂହ ତିନିଜଣ ସଦସ୍ୟବିଶିଷ୍ଟ ଏକ ସମିତି ଗଠନ କଲେ । ଏ ସମିତିରେ ସର୍ଦ୍ଦାର ଭଗତ୍ ସିଂହଙ୍କୁ ଛାଡ଼ି ଆଉ ଯେଉଁ ଦୁଇଜଣ ସଦସ୍ୟ ଥିଲେ, ସେମାନେ ହେଲେ ସୁଖଦେବ୍ ଏବଂ ବିଜୟକୁମାର ସିହ୍ନା । ମାମଲାର କଳଙ୍କ ମାଧ୍ୟମରେ ବିପ୍ଳବୀ ଦଳର

ଉଦ୍ଦେଶ୍ୟ ସାଧନା କରିବା ସମିତିର ମୁଖ୍ୟ ଲକ୍ଷ୍ୟ ଥିଲା । ସର୍ବପ୍ରଥମେ ବିଚାରାଧୀନ ବନ୍ଦୀମାନଙ୍କ ଅଧିକାର ପାଇଁ ସେମାନଙ୍କର ସଂଘର୍ଷ କରିବାର ଥିଲା । ବିଶେଷତଃ ରାଜନୈତିକ ବନ୍ଦୀମାନଙ୍କ ପ୍ରତି ଜେଲ୍ କର୍ତ୍ତୃପକ୍ଷ ଯେପରି ରୂକ୍ଷ ବ୍ୟବହାର ନ ଦେଖାନ୍ତି, ସେଥିପ୍ରତି ମଧ୍ୟ ଉକ୍ତ ସମିତି ଯଥେଷ୍ଟ ଧ୍ୟାନ ଦେଇଥିଲେ । ବନ୍ଦୀମାନେ ସେମାନଙ୍କର ସୁବିଧା ସୁଯୋଗ ହାସଲ କରିବା ପାଇଁ ନିରନ୍ତର ସଂଘର୍ଷ କରି ବହୁ ଯନ୍ତ୍ରଣା ଭୋଗ କରିବାରୁ ଜେଲ୍ କର୍ତ୍ତୃପକ୍ଷ ବାଧ୍ୟହୋଇ ସେମାନଙ୍କ ସହିତ ସମ୍ମାନଜନକ ବ୍ୟବହାର କରିବାକୁ ଲାଗିଲେ । ବନ୍ଦୀମାନଙ୍କୁ ଧୀରେ ଧୀରେ ଅଧିକରୁ ଅଧିକ ସୁବିଧା ସୁଯୋଗ ମିଳିଲା । ସେମାନଙ୍କର ବସିବା ପାଇଁ ଆରାମ ଦାୟକ ଚେୟାର, ଟେବୁଲ୍ ଇତ୍ୟାଦି ଦିଆଗଲା । ବାହାର ଦୁନିଆ ସହିତ ସେମାନଙ୍କୁ ପ୍ରତ୍ୟକ୍ଷ ପରିଚିତ କରିବା ପାଇଁ ଦୈନିକ ସମ୍ବାଦପତ୍ର ଯୋଗାଇବାର ବ୍ୟବସ୍ଥା କରାଗଲା । ଏହା ବ୍ୟତୀତ ଖାଇବା ପିଇବାର ମଧ୍ୟ ସୁବ୍ୟବସ୍ଥା କରାଗଲା । ପ୍ରକୃତ ଦେଶ-ଭକ୍ତମାନଙ୍କ ପ୍ରତି ଯେପ୍ରକାର ସମ୍ମାନଜନକ ବ୍ୟବହାର ଦେଖାଇବା ଉଚିତ, ଜେଲ୍ କର୍ତ୍ତୃପକ୍ଷ ରାଜନୈତିକ ବନ୍ଦୀମାନଙ୍କୁ ସେହି ପ୍ରକାର ବ୍ୟବହାର ଦେଖାଇବାକୁ ଲାଗିଲେ ।

ମୋକଦ୍ଦମା ଶୁଣିବା ପାଇଁ ଅଦାଲତକୁ ଆସୁଥିବା ଜନସାଧାରଣଙ୍କ ଉପରେ ଯେଉଁ କଟକଣା ଥିଲା, ତାହା ତୁରନ୍ତ ଉଠାଇ ଦେବା ପାଇଁ ସରକାରଙ୍କ ସହିତ ଆଉ ଏକ ଲଢ଼େଇ ଲାଗିଗଲା । ଲାହୋର ସେଣ୍ଟ୍ରାଲ ଜେଲରେ ମୋକଦ୍ଦମାର ବିଚାର ଚାଲିଥିଲା । ଦର୍ଶକମାନଙ୍କ ଉପରେ ଏପରି କଟକଣା ଜାରି କରାଯାଇଥିଲା ଯେ, ଖୁବ୍ କମ୍ ଲୋକ ଏଥି ପାଇଁ ସୁଯୋଗ ପାଉଥିଲେ । ଏ କଟକଣା ବିରୁଦ୍ଧରେ ପ୍ରାୟ ଏକମାସ ଧରି ଆନ୍ଦୋଳନ ଚାଲିଲା ପରେ ବହୁ ପ୍ରତିବନ୍ଧକ ଦୂର ହୋଇଗଲା ଏବଂ ବହୁ ଯୁବକ ଓ ମହିଳା ମୋକଦ୍ଦମାର ବିଚାର ଶୁଣିବାକୁ ସୁଯୋଗ ପାଇଲେ । ପ୍ରତିଦିନ "ଇନ୍‌କିଲାବ୍ ଜିନ୍ଦାବାଦ୍","ସାମ୍ରାଜ୍ୟବାଦ ମୁର୍ଦ୍ଦାବାଦ" "ଶ୍ରମିକ ଜନତା ଜିନ୍ଦାବାଦ" ଇତ୍ୟାଦି ସ୍ଲୋଗାନ୍ ପରେହିଁ ମୋକଦ୍ଦମା ଶୁଣାଣି ଆରମ୍ଭ ହେଉଥିଲା । ଏହାଦ୍ୱାରା ଜନସାଧାରଣ ବିଶେଷ ଭାବରେ ପ୍ରଭାବିତ ହେଉଥିଲେ ।

ବିଶେଷତଃ ଯୁବକମାନେ ଏଥିରୁ ଅଫୁରନ୍ତ ପ୍ରେରଣା ଲାଭ କରୁଥିଲେ । ତାର ଜ୍ୱଳନ୍ତ ଉଦାହରଣ ପଞ୍ଜାବରେହିଁ ଦେଖାଯାଇଥିଲା । ଲାହୋର-ଷଡ଼ଯନ୍ତ୍ର ମୋକଦ୍ଦମା ଶୁଣାଣି ଧରେ ପଞ୍ଜାବର ଯୁବକମାନେ ଅନ୍ୟ ପାଞ୍ଚ, ଛଅଟି ଷଡ଼ଯନ୍ତ୍ର ମାମଲା ଭିଆଇ ପୁଲିସ୍ ଦ୍ୱାରା ଗିରଫ ହୋଇଥିଲେ ।

ମୋକଦ୍ଦମା ଶୁଣାଣି ସମୟରେ ଅଭିଯୁକ୍ତ ବ୍ୟକ୍ତିମାନେ ନିଜେହିଁ ବିଶିଷ୍ଟ ସାକ୍ଷୀ, ବିଶେଷତଃ ସରକାରୀ ଗୁପ୍ତଚରମାନଙ୍କୁ ଜେରା କରୁଥିଲେ । ଏହାଦ୍ୱାରା ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ନ୍ୟାୟ ଦେବା ସହଜ ହେଉଥିଲା ଓ ସରକାରୀ ସାକ୍ଷୀମାନେ ସହଜରେ ମିଥ୍ୟା ଯୁକ୍ତି ବାଢ଼ି ପାରୁ ନଥିଲେ । ଏହା ବ୍ୟତୀତ ଅଦାଲତ ଏବଂ ଜନ ସାଧାରଣଙ୍କ ସମ୍ମୁଖରେ ବିପ୍ଳବୀ ଦଳର ମହତ୍ତ୍ୱ ପ୍ରତିପାଦିତ ହେବା ସଙ୍ଗେ ସଙ୍ଗେ ତାର ଉଦ୍ଦେଶ୍ୟ ମଧ୍ୟ ସାଧିତ ହେଉଥିଲା । ମାମଲା ଶୁଣାଣି ସମୟରେ ବିପ୍ଳବୀ କାର୍ଯ୍ୟକ୍ରମ ପଛରେ କି ଉଦ୍ଦେଶ୍ୟ ଥିଲା ଏବଂ ଏହାକୁ କାର୍ଯ୍ୟକାରୀ କରିବା ପାଇଁ କିପ୍ରକାର ଯୋଜନା କରାଯାଇଥିଲା ଯେସବୁ ସମ୍ବନ୍ଧରେ ବିଶେଷ ବିବରଣୀ ଜନ ସାଧାରଣଙ୍କ ଗୋଚରାର୍ଥେ ସମସ୍ତଙ୍କ ଆଗରେହିଁ ପ୍ରକାଶ କରାଯାଇ ପାରୁଥିଲା । ଏହିପରି ଭାବରେ ଷଡ଼ଯନ୍ତ୍ର-ମାମଲା ଶୁଣାଣି ଦ୍ୱାରା ଦେଶର ସହସ୍ର ଯୁବକଙ୍କ ହୃଦୟରେ ନୂତନ ପ୍ରେରଣା ଜଗାଇବା ଭଗତ୍ ସିଂହ ଓ ତାଙ୍କ ବିପ୍ଳବୀ ବନ୍ଧୁମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ବିପ୍ଳବୀମାନଙ୍କ ମଧ୍ୟରୁ କେହି କୌଣସି ପ୍ରକାରେ ବିପ୍ଳବାତ୍ମକ ଭାବଧାରା ପ୍ରକାଶ ନିମିତ୍ତ ଟିକିଏ ମାତ୍ର ସୁଯୋଗ ପାଇଲେ ମଧ୍ୟ ତାର ସଦୁପଯୋଗ କରିବାକୁ ଛାଡୁ ନଥିଲେ । ଖୋଲା ଅଦାଲତରେ ସେମାନେ 'କାକୋରୀ ଦିବସ' 'ମଇଦିବସ' ଓ 'ଲିଜ୍ପତ୍ ଦିବସ' ଆଦି ଆନ୍ଦୋଳନ କରୁଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାଦ୍ୱାରା ଜନସାଧାରଣଙ୍କର ରାଜନୈତିକ ଚେତନା ଅଧିକ ଉଜ୍ଜୀବିତ ହେଉଥିଲା । ଅଭିଯୁକ୍ତ ବିପ୍ଳବୀମାନେ ଅଦାଲତରେ ଶ୍ୟାମଜୀକୃଷ୍ଣ ବର୍ମାଙ୍କ ମୃତ୍ୟୁ, ହଙ୍ଗେରୀରେ ଅନଶନ କରିଥିବା ଏକ ରାଜନୈତିକ ବନ୍ଦୀର ମୃତ୍ୟୁ ତଥା ଏହିପରି ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଉଦାହରଣମାନ ଦେଇ ଚୁଥିଲେ । ସରକାରୀପକ୍ଷ ଏ ଗୁଡ଼ିକୁ ଶୁଣାଣିରେ ଲେଖି ରଖିବାକୁ ମଧ୍ୟ

କୁଣ୍ଠାବୋଧ କରୁ ନଥିଲେ । ସରକାର ପକ୍ଷର ଧାରଣା ଏପରି ଥିଲା ଯେ, ଯେମାନେ ଗିରଫ ହୋଇଥିଲେ, ଏହାଦ୍ୱାରା ଅଭିଯୁକ୍ତ ବ୍ୟକ୍ତିମାନେ ସେମାନଙ୍କ ନିଜ ବିରୁଦ୍ଧରେ ହିଁ ଅଯଥା ପ୍ରମାଣ ବାଢ଼ୁଛନ୍ତି । କିନ୍ତୁ ବିପ୍ଳବୀମାନେ ଏ ବିଷୟ ଆଦୌ ଚିନ୍ତା କରୁ ନଥିଲେ । ଫଳରେ ସୁଯୋଗ ପାଇଲା ମାତ୍ରେ ସେମାନେ ଅଦାଲତରେ ଉପସ୍ଥିତ ଜନତା ତଥା ଯୁବକମାନଙ୍କୁ ରାଜନୈତିକ ପ୍ରଭାବରେ ପ୍ରଭାବିତ କରିବାକୁ ଛାଡ଼ୁ ନଥିଲେ ;

ବିଚାରାଧୀନ ବନ୍ଦୀମାନଙ୍କୁ ମାଜିଷ୍ଟ୍ରେଟ୍‌ଙ୍କ ଅଦାଲତରେ ହାତକଡ଼ି ଦେବାକୁ ଉଦ୍ୟମ କରିବା ସମୟରେ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା । ଏହି ସମୟରେ ଷଡ଼ଯନ୍ତ୍ର ମାମଲାର ଗୁପ୍ତଚର ରୋବ୍ ସାହେବ ସାକ୍ଷୀମାନେ ଛିଡ଼ା ହେବାକୁ ଥିବା କାଠଗଡ଼ା ମଧ୍ୟରେ ହଠାତ୍ ପ୍ରବେଶ କଲେ ଏବଂ ସେଠାରେ ନିଶଙ୍କ ଭାବରେ ଉପସ୍ଥିତ ଆସାମୀମାନଙ୍କ ପ୍ରତି ବ୍ୟଙ୍ଗାତ୍ମକ ମନ୍ତବ୍ୟ ଦେବାକୁ ଲାଗିଲେ । ଏଥିରେ ଅଭିଯୁକ୍ତ ବ୍ୟକ୍ତିମାନେ ବିଶେଷ ଲଜ୍ଜା ଅନୁଭବ କଲେ । ସେମାନଙ୍କ ମଧ୍ୟରେ ସବୁଠାରୁ କମ୍ ବୟସର ଆସାମୀ ଥିଲେ ଶ୍ରୀ ପ୍ରେମଦତ୍ତ । ସେ କିନ୍ତୁ ରୋବ୍ ସାହେବଙ୍କ ଅପମାନ ସହିପାରିଲେ ନାହିଁ । ତେଣୁ ସେ ସେହିକ୍ଷଣି ଗୋଡ଼ରୁ ନିଜର ଚପଲ ବାହାର କରି ଗୁପ୍ତଚର ଉପରକୁ ଫିଙ୍ଗିଦେଲେ । ସଙ୍ଗେ ସଙ୍ଗେ ବିଚାର କାର୍ଯ୍ୟ ସ୍ଥଗିତ ରହିଲା ଏବଂ ଆସାମୀମାନେ ଅଦାଲତରେ ଥିବା ପର୍ଯ୍ୟନ୍ତ ତାଙ୍କୁ ହାତକଡ଼ି ପିନ୍ଧାଇବା ପାଇଁ ଏକ ସ୍ଥାୟୀ ଆଦେଶ ଜାରି କରାଗଲା । ଭଗତ୍ ସିଂହ ଏବଂ ତାଙ୍କ ସାଥୀମାନେ ସେତେବେଳେ ସ୍ଥିର କରିନେଲେ ଯେ, ଯେ ପର୍ଯ୍ୟନ୍ତ ଏ ଆଦେଶକୁ ରଦ୍ଦ କରା ନ ଯାଇଛି, ସେ ପର୍ଯ୍ୟନ୍ତ ଯାହା ହେଲେ ବି ସେମାନେ ଅଦାଲତକୁ ଯିବେ ନାହିଁ ।

ପରଦିନ ପୁଲିସ୍ ବହୁ ଚେଷ୍ଟା କରି ମଧ୍ୟ ଆସାମୀମାନଙ୍କ ମଧ୍ୟରୁ ଜଣକୁ ହେଲେ ଅଦାଲତକୁ ଆଣି ପାରିଲେ ନାହିଁ । ଷୋହଳଜଣ ଆସାମୀଙ୍କ ମଧ୍ୟରୁ ମାତ୍ର ପାଞ୍ଚଜଣଙ୍କୁ ସେମାନେ ବହୁ କଷ୍ଟରେ ଜେଲ ଲରିରେ ପୂରାଇ ଅଦାଲତ ଫାଟକ ପର୍ଯ୍ୟନ୍ତ ଆଣିଥିଲେ । କିନ୍ତୁ ସେଠାରେ ପୁଲିସ୍ ଏହି ପାଞ୍ଚଜଣ ଆସାମୀଙ୍କୁ ଲରି ମଧ୍ୟରୁ ବାହାର କରି

ପାରିଲେ ନାହିଁ । ତହିଁ ପରଦିନ ଆସାମୀମାନେ ଜେଲ୍‌ରୁ ଅଦାଲତ ପର୍ଯ୍ୟନ୍ତ ହାତକଡ଼ି ପିନ୍ଧି ଆସିବାକୁ ରାଜିହେଲେ । ଅଦାଲତରେ ହାତକଡ଼ି ପିନ୍ଧାଇଲେ ସେମାନେ ଆଦୌ ଆସିବେ ନାହିଁ ବୋଲି ଜଣାଇଦେଲେ । କିନ୍ତୁ ସେମାନଙ୍କ କଥା ରହିଲା ନାହିଁ । ଅଦାଲତରେ ମଧ୍ୟ ସେମାନଙ୍କୁ ହାତକଡ଼ି ପିନ୍ଧାଇ ଦିଆଗଲା । ଏଥିରୁ ରକ୍ଷା ପାଇବା ପାଇଁ ଆସାମୀମାନେ ଏକ ଉପାୟ ପାଞ୍ଚିଲେ । ଦିପହରର ବେଳକୁ ଯେତେବେଳେ ମଧ୍ୟାହ୍ନ ଭୋଜନ ସମୟ ହେଲା, ସେତେବେଳେ ଖାଇବା ପାଇଁ ସେମାନଙ୍କର ହାତ ଖୋଲି ଦିଆଯାଉ ବୋଲି ସେମାନେ କର୍ତ୍ତୃପକ୍ଷଙ୍କୁ ଅନୁରୋଧ ଜଣାଇଲେ । ଖାଇ ସାରିଲା ପରେ ହାତକଡ଼ି ପିନ୍ଧାଇବା ପାଇଁ ପୁଲିସ୍ ଅଗ୍ରସର ହେଲେ । କିନ୍ତୁ ଆସାମୀମାନେ ଆଉ ହାତକଡ଼ି ପିନ୍ଧିବେ ନାହିଁ ବୋଲି ସଫା ମନା କରିଦେଲେ । ଫଳରେ ପୁଲିସ୍ ଓ ଆସାମୀଙ୍କ ମଧ୍ୟରେ ଧସ୍ତାଧସ୍ତି ହେଉଁ ହେଉଁ ଖଣ୍ଡଯୁଦ୍ଧ ଆରମ୍ଭ ହୋଇଗଲା । ସେଠାରେ ଥିବା ପୁଲିସ୍ ଅବସ୍ଥା ସମ୍ଭାଳି ନ ପାରିବାରୁ ଶେଷରେ ସ୍ୱତନ୍ତ୍ର ପଠାଣ ପୁଲିସ୍‌ଙ୍କୁ ଅଣାଗଲା । ସେମାନେ ଆସାମୀମାନଙ୍କୁ ନିର୍ମମ ଭାବରେ ପ୍ରହାର କରିବାକୁ ଲାଗିଲେ ।

ସର୍ଦ୍ଦାର ଭଗତ୍ ସିଂହ ଏଥିରେ ବିଶେଷ ଭାବରେ ଆହତ ହୋଇଥିଲେ । ଏକ ସମୟରେ ଆଠଜଣ ପଠାଣ ପୁଲିସ୍ ତାଙ୍କ ଉପରେ ଆକ୍ରମଣ ଚଳାଇଥିଲେ । ସେମାନେ ଲାଠି ଏବଂ ପିନ୍ଧିଥିବା ଯୋତାରେ ତାଙ୍କ ଉପରେ ଆଘାତ କରିବାକୁ ଲାଗିଲେ । ଏ ଘଟଣା ଶହ ଶହ ଦର୍ଶକଙ୍କ ସମ୍ମୁଖରେ ଘଟିଥିଲା । ଦର୍ଶକମାନଙ୍କ ମଧ୍ୟରେ ବହୁ ମହିଳା ଦର୍ଶକ ମଧ୍ୟ ଥିଲେ । ସମସ୍ତଙ୍କ ଉପରେ ଏହାର ପ୍ରଭାବ ଗଭୀର ଭାବରେ ପଡ଼ିଲା । ସେଦିନ ସନ୍ଧ୍ୟା ସମୟକୁ ଲାହୋର ଜେଲ୍‌ରେ ଏକ ବିରାଟ ସଭାର ଆୟୋଜନ କରାଗଲା । ସେଥିରେ ପୁଲିସ୍‌ର ଅମାନୁଷିକ ଅତ୍ୟାଚାରକୁ ତୀବ୍ର ଭାବରେ ସମାଲୋଚନା କରାଗଲା । ଶ୍ରେଷ୍ଠ ବଡ଼ ସମସ୍ତ ପତ୍ର ପତ୍ରିକାରେ ଏ ଖବର ପ୍ରକାଶ ପାଇଲା ।

ଅଦାଲତରେ ବିଚାରପତିଙ୍କ ସମ୍ମୁଖରେ ଏ ଦୁଃଖଦାୟକ ଘଟଣା ଘଟିବାରୁ ସେଦିନ ବିଚାର ଶୁଣାଣି ସ୍ଥଗିତ ରଖାଗଲା । ବିଚାର କାର୍ଯ୍ୟ

ବନ୍ଦରେ ପରେ ମଧ୍ୟ ପୁଲିସ ଜୁଲୁମ୍ ପୁଣି ଚାଲିଲା । ଜେଲ୍‌ ଭିତରେ ମଧ୍ୟ ପୁଲିସ୍ ଭଗତ୍ ସିଂହଙ୍କ ଉପରେ ଆକ୍ରମଣ ଚଳାଇଥିଲେ । ସର୍ବଶେଷରେ ଏ ଅତ୍ୟାଚାରର ଫଳ ସ୍ୱରୂପ ହାତକଡ଼ି ଦେବା ପାଇଁ ଆଗରୁ ଯେଉଁ ସ୍ଥାୟୀ ଆଦେଶ ଦିଆଯାଇଥିଲା ତାହା ଉଠାଇ ଦିଆଗଲା । ପୁଲିସ୍ ତଥା ଜେଲ୍ କର୍ତ୍ତୃପକ୍ଷ ତାଙ୍କ ରିପୋର୍ଟରେ ଏ ମର୍ମନ୍ତୁଦ ଘଟଣାର ପୂର୍ଣ୍ଣ ବିବରଣୀ ପ୍ରଦାନ କରିଥିଲେ । ଏ ରିପୋର୍ଟରେ ସ୍ପଷ୍ଟ ଭାବରେ ଦର୍ଶାଇ ଦିଆଯାଇଥିଲା ଯେ, ଆସାମୀମାନଙ୍କୁ ମାରିବା ଏବଂ ମାରି ସେମାନଙ୍କର ପ୍ରାଣ ନେବା ମଧ୍ୟ ସମ୍ଭବ, କିନ୍ତୁ ଏମାନଙ୍କୁ କୌଣସି ପ୍ରକାରେ ଅଦାଲତକୁ ନେବା ସମ୍ଭବ ନୁହେଁ । ଫଳରେ ମାଜିଷ୍ଟ୍ରେଟ୍‌ଙ୍କୁ ତାଙ୍କ ପୂର୍ବ ଆଦେଶ ରଦ୍ଦ କରିବାକୁ ପଡ଼ିଲା ।

ଲାହୋର-ଷଡ଼ଯନ୍ତ୍ର ସମ୍ବନ୍ଧୀୟ ମୋକଦ୍ଦମା ଶୁଣାଣି ବିଷୟରେ ଏ ଯେଉଁ ଘଟଣା ଘଟିଲା, ତାହା ସମଗ୍ର ଭାରତବର୍ଷ ତଥା ବିଦେଶରେ ପ୍ରଚାରିତ ହୋଇଗଲା । ଏ ବିଷୟରେ ନିୟମିତ ତଥ୍ୟ ପାଇବା ପାଇଁ ପୋଲାଣ୍ଡର ଜଣେ ମହିଳା ଆବଶ୍ୟକୀୟ ଅର୍ଥ ପଠାଇ ଦେଉଥିଲେ । ଜାପାନ, କାନେଡ଼ା, ଏବଂ ସୁଦୂର ଦକ୍ଷିଣ ଆମେରିକାରୁ ମଧ୍ୟ ଏଥିପାଇଁ ଚାନ୍ଦା ଆସୁଥିଲା । ଦେଶର ବିଭିନ୍ନ ପ୍ରାନ୍ତରେ 'ଭଗତ୍ ସିଂହ ଦିବସ ଦିବସ' ପାଳନ କରାଗଲା ଏବଂ ସେମାନଙ୍କର ପ୍ରତିଛବି କ୍ୟାଲେଣ୍ଡାର୍‌ମାନଙ୍କରେ ବ୍ୟାପକ ଭାବରେ ଛପା ହେବାକୁ ଲାଗିଲା ।

ଦେଶର ଅସଂଖ୍ୟ ରାଷ୍ଟ୍ରନେତା ଅଦାଲତକୁ ଆସି ଆସାମୀମାନଙ୍କ ସହିତ ସାକ୍ଷାତ କରିଥିଲେ । ଏହି ନେତାମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଶ୍ରୀ ସୁଭାଷଚନ୍ଦ୍ର ବୋଷ୍, ବାବା ଗୁରୁଦତ୍ତ ସିଂହ, କେ. ଏଫ୍. ନରିମାନ୍, ରଫିଅହମ୍ମଦ୍ କିଦୁଆଇ, ଶ୍ରୀ ମୋହନଲାଲ ସାକ୍‌ସେନା ଏବଂ ସ୍ୱର୍ଗୀୟ ମୋତିଲାଲ୍ ନେହେରୁ । ପଣ୍ଡିତ ମୋତିଲାଲ୍ ନେହେରୁ ସେମାନଙ୍କ ସହିତ ସାକ୍ଷାତ କରିବା ପାଇଁ ଦୁଇବାର ଆସିଥିଲେ । ଥରେ ସେ କାଠଗଡ଼ା ମଧ୍ୟରେ ଆସାମୀମାନଙ୍କ ସହିତ ବସି ପ୍ରାୟ ଏକଘଣ୍ଟା ପର୍ଯ୍ୟନ୍ତ କଥାବାର୍ତ୍ତା କରିଥିଲେ ।

ପଣ୍ଡିତ ମୋତିଲାଲ ନେହେରୁ ଓ ସର୍ଦ୍ଦାର ଭଗତ୍ ସିଂହଙ୍କ ମଧ୍ୟରେ ଯେଉଁ ସବୁ କଥାବାର୍ତ୍ତା ହୋଇଥିଲା, ତାହା ମାଧ୍ୟମରେ ଭଗତ୍ ସିଂହ ଦେଶମାତୃକା ପାଇଁ କାର୍ଯ୍ୟ କରିବାକୁ ଅଶେଷ ପ୍ରେରଣା ଲାଭ କରିଥିଲେ । ଭଗତ୍ ସିଂହଙ୍କ ମନରେ ସେତେବେଳେ ପ୍ରଧାନତଃ ଦୁଇଟି କଳ୍ପନା ଉଙ୍କି ମାରୁଥିଲା—ପ୍ରଥମଟି ହେଉଛି ସି. ଆଇ. ଡି. ସୁପରିଣ୍ଟେଣ୍ଡେଣ୍ଟ୍ ଖାଁ ବାହାଦୂର ଅବ୍ଦୁଲ୍ ଅଜିଜ୍‌ଙ୍କୁ ହତ୍ୟା କରିବା ଏବଂ ଦ୍ୱିତୀୟଟି ହେଉଛି ବଡ଼ଲାଟ୍‌ଙ୍କ ସ୍ୱତନ୍ତ୍ର ରେଲଗାଡ଼ିକୁ ବଦ୍ୟୁତ୍ ଚାଳିତ ବୋମାଦ୍ୱାରା ଉଡ଼ାଇ ଦେବା । ତାଙ୍କର ଏ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ପରେ ଉଦ୍ୟମ ହୋଇଥିଲା । କିନ୍ତୁ ଏ ଉଦ୍ୟମ ସଫଳ ହୋଇ ପାରିଲା ନାହିଁ । ଅବ୍ଦୁଲ୍ ଅଜିଜ୍‌ଙ୍କୁ ହତ୍ୟା କରିବା ପାଇଁ ଉଦ୍ୟମ ହୋଇଥିଲେ ମଧ୍ୟ ସେ ଅଳ୍ପକେ ବର୍ତ୍ତିଗଲେ । ସେହିପରି ବଡ଼ଲାଟ୍‌ଙ୍କ ରେଲଗାଡ଼ି ତଳେ ବୋମା ବିସ୍ଫୋରଣ ଘଟିବାରେ ଟିକିଏ ବିଳମ୍ବ ହୋଇ ଯିବାରୁ ଗାଡ଼ିର କେବଳ ଶେଷ ଡବାଟି ଧ୍ୱଂସ ହୋଇଗଲା; କିନ୍ତୁ ବଡ଼ଲାଟ୍‌ଙ୍କର କୌଣସି କ୍ଷତି ହେଲାନାହିଁ ।

ଏ ପ୍ରସଙ୍ଗରେ କୁହାଯାଇପାରେ ଯେ, ପଣ୍ଡିତ ମୋତିଲାଲ ନେହେରୁ ଭାରତୀୟ ଜାତୀୟ କଂଗ୍ରେସର ଏକ ନରମପନ୍ଥୀ ସଦସ୍ୟ ହୋଇଥିଲେ ମଧ୍ୟ ଚନ୍ଦ୍ରଶେଖର ଆଜାଦ୍‌ଙ୍କ ଅନୁରୋଧକ୍ରମେ ସେ ବିପ୍ଳବୀ ଭଗତ୍ ସିଂହଙ୍କୁ ବହୁବାର ଆର୍ଥିକ ସାହାଯ୍ୟ ଦେଇଥିଲେ । ଲାହୋର ଷଡ଼ଯନ୍ତ୍ର ମାମଲାର ପ୍ରଭାବ ଦେଶର ଜନସାଧାରଣଙ୍କ ଉପରେ କ୍ରମଶଃ ବଢ଼ିବାର ଦେଖି ପଣ୍ଡିତ ମୋତିଲାଲ୍ ନେହେରୁ ଟିକିଏ ଶଙ୍କିତ ହୋଇପଡ଼ିଲେ । ଏଥିରୁ କିପରି ରକ୍ଷା ମିଳିବ ତାର ଉପାୟ ମଧ୍ୟ ସେ ଚିନ୍ତା କରିବାକୁ ଲାଗିଲେ । ଶେଷରେ ସରକାରୀ କର୍ତ୍ତୃପକ୍ଷ ଲାହୋର୍-ଷଡ଼ଯନ୍ତ୍ର ମାମଲାର ବିଚାର-ନିଷ୍ପତ୍ତି ଜଣାଇ ଦେବାକୁ ସ୍ଥିରକଲେ । ପ୍ରଥମେ ପଞ୍ଜାବ ସରକାରଙ୍କ ଏ ପ୍ରକାର ନିଷ୍ପତ୍ତିକୁ ଭାରତ ସରକାର ଗ୍ରହଣ କରି ନଥିଲେ; କାରଣ ଏହାଦ୍ୱାରା ଦେଶବ୍ୟାପୀ ଆନ୍ଦୋଳନ ହେବାର ଆଶଙ୍କା ଥିଲା । କିନ୍ତୁ ଯେତେବେଳେ କଂଗ୍ରେସ ଓ ସରକାରଙ୍କ ମଧ୍ୟରେ ଚାଲିଥିବା ସଂଘର୍ଷର ଅବସାନ ଘଟିଲା, ସେତେବେଳେ ଜନସାଧାରଣ ସରକାରଙ୍କ ଉପରେ ଆଉ ଭରସା ରଖିଲେ

ନାହିଁ । ତେଣୁ ଲାହୋର ଷଡ଼ଯନ୍ତ୍ର ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ବିଜ୍ଞପ୍ତି ଶୀଘ୍ର ପ୍ରକାଶ ପାଇଲା ।

ସର୍ଦ୍ଦାର ଭଗତ୍ ସିଂହ ଏବଂ ତାଙ୍କ ସାଥୀମାନେ ଅନୁଭବ କଲେ ଯେ, ବିପ୍ଳବୀ ସଂଗଠନ ବିଷୟରେ ଅଧିକ ବ୍ୟାପକ ପ୍ରଚାର ଏକାନ୍ତ ଆବଶ୍ୟକ । ଲାହୋର ଷଡ଼ଯନ୍ତ୍ର ସମ୍ବନ୍ଧରେ ଯେଉଁ ସ୍ୱତନ୍ତ୍ର ବିଜ୍ଞପ୍ତି ପ୍ରକାଶ ପାଇଥିଲା, ତାହା ବିପ୍ଳବୀମାନଙ୍କ ସ୍ୱାର୍ଥବିରୋଧୀ ଥିବାରୁ ସେମାନେ ଅସନ୍ତୋଷ ପ୍ରକାଶ କରିଥିଲେ । ଅତଏବ ବିଚାରାଧୀନ ବନ୍ଦୀମାନେ ଏ ବିଷୟ ଆଲୋଚନା କରିବା ନିମିତ୍ତ ଏକ ବୈଠକରେ ମିଳିତ ହେଲେ । ସର୍ଦ୍ଦାର ଭଗତ୍ ସିଂହ ଏ ବୈଠକରେ ଭାଷଣ ପ୍ରସଙ୍ଗରେ ତାଙ୍କ ସାଥୀମାନଙ୍କୁ ଉପଦେଶ ଦେଇ କହିଥିଲେ ଯେ. ବିପ୍ଳବାତ୍ମକ ନୀତି ଅନୁସରଣ କରି ନ୍ୟାୟାଳୟର ବୈଧତାକୁ ଆମର ଅସ୍ୱୀକାର କରିଦେବା ଏକାନ୍ତ ଉଚିତ । ଏ ବୈଠକରେ ଖୁବ୍ ଜୋର୍‌ସୋର୍ ଆଲୋଚନା ଚାଲିଥିଲା । ଏଥିରେ ପରସ୍ପରବିରୋଧୀ ଭାବାପନ୍ନ ଦୁଇଟି ପ୍ରସ୍ତାବ ଆଗତ କରାଯାଇଥିଲା । ଦଳେ କହିଲେ ଯେ, ସେମାନେ ଅଦାଲତ କାର୍ଯ୍ୟକ୍ରମରେ ଭାଗନେବେ ଏବଂ ଉପଯୁକ୍ତ ସମୟ ଆସିଲେ ଏସେମ୍ବ୍ଲି ବୋମାକାଣ୍ଡ ମାମଲାରେ ଭଗତ୍ ସିଂହ ଯେପରି ଜବାବ୍ ସ୍ୱୀକାର୍ କରୁଥିଲେ, ସେହିପରି କରିବେ । ଆଉ ଦଳେ ସର୍ଦ୍ଦାର ଭଗତ୍ ସିଂହଙ୍କ ପ୍ରସ୍ତାବ ଅନୁସାରେ କାର୍ଯ୍ୟ କରିବାକୁ ସ୍ଥିରକଲେ । ସେ ସମୟରେ କୌଣସି ପ୍ରକାର ରାଜଦ୍ରୋହ କାର୍ଯ୍ୟପାଇଁ ଫାଶୀ ବା ଆଜୀବନ ନିର୍ବାସନ ଦଣ୍ଡର ଯଥେଷ୍ଟ ସମ୍ଭାବନା ଥିଲା । ତଥାପି ସର୍ଦ୍ଦାର ଭଗତ୍ ସିଂହ ଆବଶ୍ୟକ ହେଲେ ଏ ପ୍ରକାର କାର୍ଯ୍ୟ କରିବାକୁ ଦ୍ୱିଧାବୋଧ କରୁ ନଥିଲେ । ତାଙ୍କର ଧାରଣା ଥିଲା ଯେ, ଦେଶମାତୃକାର ସେବାପାଇଁ ରାଜଦ୍ରୋହ ଅପରାଧରେ ଯଦି ସେ ମୃତ୍ୟୁଦଣ୍ଡ ବା ଆଜୀବନ କାରାଦଣ୍ଡରେ ଦଣ୍ଡିତ ହୁଅନ୍ତି, ତାହାହେଲେ ତାଙ୍କର ଦୁଃସାହସିକ କାର୍ଯ୍ୟାବଳୀ ଦେଶର ଶତ ସହସ୍ର ଯୁବକଙ୍କ ପ୍ରାଣରେ ଏକ ଆଲୋଡ଼ନ ସୃଷ୍ଟି କରିବ ଏବଂ ସେମାନେ ଦେଶର ମୁକ୍ତିପାଇଁ ଆତ୍ମବଳୀ ଦେବାକୁ ଅନୁପ୍ରାଣିତ ହୋଇ ଆଗେଇ ଆସିବେ । ଏହାଦ୍ୱାରା ଭାରତୀୟ ସ୍ୱାଧୀନତାର ସଂଗ୍ରାମ ପାଇଁ ସୁଦୃଢ଼ ବିପ୍ଳବୀ ସଂଗଠନ

ଗୁଡ଼ିକର ଅନ୍ୟ କୌଣସି ସ୍ଥାନରେ ସୁବିଧା ସୁଯୋଗ ନଥିବାରୁ ଅଦାଲତ ହିଁ ଏ କାର୍ଯ୍ୟପାଇଁ ପ୍ରକୃଷ୍ଟ କ୍ଷେତ୍ର ଥିଲା । ଅଦାଲତରେ ବିଚାର ଆଲୋଚନା ଚାଲିଥିବା ସମୟରେ ହଜାର ହଜାର ଦର୍ଶକଙ୍କୁ ନିଜର ବକ୍ତବ୍ୟଦ୍ୱାରା ବିମୋହିତ କରିବାର ସୁଯୋଗ ବିପ୍ଳବୀ ଆସାମୀମାନଙ୍କୁ ମିଳୁଥିଲା । ସେଥିପାଇଁ ଭଗତ୍‌ସିଂହ ବିପ୍ଳବୀ ଆସାମୀମାନଙ୍କୁ ଅଦାଲତରେ ଯୋଗଦେବା ନିମିତ୍ତ ସର୍ବଦା ପ୍ରବର୍ତ୍ତାଇବାକୁ ଲାଗିଲେ ।

ଅଦାଲତରେ ଏହି ବିପ୍ଳବୀ ଆସାମୀମାନେ ଏକ ବିଚିତ୍ର ଢଙ୍ଗରେ ସେମାନଙ୍କର କାର୍ଯ୍ୟକ୍ରମ ଆରମ୍ଭ କରିଦେଲେ । ତଳ ଅଦାଲତରୁ ଏକ ସ୍ୱତନ୍ତ୍ର ଅଦାଲତକୁ ସେମାନଙ୍କର ମୋକଦ୍ଦମା ଉଠାଇ ନିଆଗଲା । ଏ ବିଚାରାଳୟ ମଧ୍ୟକୁ ଯେତେବେଳେ ବିପ୍ଳବୀ ଆସାମୀମାନଙ୍କୁ ନିଆଯାଉଥିଲା, ସେତେବେଳେ ସେମାନେ ତଳ ଅଦାଲତରେ ଯେପରି ସ୍ଲୋଗାନ୍ ଦେଉଥିଲେ, ସେହିପରି ସ୍ଲୋଗାନ୍ ଦେଇ ଦେଇ ଅଦାଲତରେ ପ୍ରବେଶ କରୁଥିଲେ । ସେମାନଙ୍କ ସ୍ଲୋଗାନ୍ ତଥା ଦେଶାତ୍ମବୋଧ ସଙ୍ଗୀତରେ ବିଚାରାଳୟ କକ୍ଷ ପାଇଁ ମୁଖରିତ ରହୁଥିଲା । ପ୍ରତ୍ୟହ ଏକ ବା ଏକାଧିକ ଦେଶାତ୍ମବୋଧ ସଙ୍ଗୀତ ବୋଲା ନ ହେଲା ପର୍ଯ୍ୟନ୍ତ ନ୍ୟାୟାଳୟର କୌଣସି କାର୍ଯ୍ୟ ଆରମ୍ଭ ହୋଇ ପାରୁନଥିଲା । ଏକାଦିକ୍ରମେ ତିନିଦିନ ପର୍ଯ୍ୟନ୍ତ ଏପରି ଚାଲିବାରୁ ବିଚାରାଳୟର ତିନିଜଣ ବିଚାରକ ଅତିଷ୍ଠ ହୋଇପଡ଼ିଲେ । ସେମାନେ ବିରକ୍ତ ହୋଇ ଆସାମୀମାନଙ୍କୁ ହାତକଡ଼ି ପିନ୍ଧାଇବାକୁ ଆଦେଶ ଦେଲେ, ଫଳରେ ଏ ପ୍ରଶ୍ନ ନେଇ ନିମ୍ନ ଅଦାଲତରେ ଯେଉଁ ସଂଘର୍ଷ ଜନିତ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇଥିଲା, ସ୍ୱତନ୍ତ୍ର ଅଦାଲତରେ ତାର ପୁନରାବୃତ୍ତି ହେଲା । ଏ ଘଟଣାରେ ବିପ୍ଳବୀମାନଙ୍କର ଅନ୍ୟ ସଙ୍ଗଠନଗୁଡ଼ିକ ମଧ୍ୟ ରାଗାନ୍ୱିତ ହୋଇଉଠିଲେ । ସର୍ବଶେଷରେ ନ୍ୟାୟାଳୟକୁ ଯିବା ବନ୍ଦ କରିଦେବାକୁ ସ୍ଥିର କରାଗଲା । ଜେଲ୍ ଅଧ୍ୟକ୍ଷ ଏବଂ ପୁଲିସ ସୁଦକ୍ଷ ଆସାମୀମାନଙ୍କୁ ଅଦାଲତରେ ହାଜର କରାଇବା ତାଙ୍କ ପକ୍ଷରେ ଅସମ୍ଭବ ବ୍ୟାପାର ବୋଲି ଜଣାଇଦେଲେ । ତେଣୁ ଅଦାଲତରେ ମୋକଦ୍ଦମାର ଏକ ତରଫା ବିଚାର ଚାଲିଲା । ଏହାଦ୍ୱାରା ସର୍ଦ୍ଦାର ଭଗତ୍

ସିଂହଙ୍କ ଇଚ୍ଛା ପୂର୍ଣ୍ଣ ହେଲା । ସରକାର ନ୍ୟାୟର ମର୍ଯ୍ୟାଦା ରକ୍ଷା କରିବା ପାଇଁ ବିଚାରାଧୀନ ବିପ୍ଳବୀବନ୍ଦୀମାନଙ୍କୁ ବିଚାରାଳୟକୁ ଯିବା ପାଇଁ ପ୍ରବର୍ତ୍ତି କରିବାକୁ ଲାଗିଲେ । ସ୍ୱତନ୍ତ୍ର ବିଚାରାଳୟର ଅଧ୍ୟକ୍ଷ ଆସାମୀମାନଙ୍କୁ ମାଡ଼ମାରିଥିବାରୁ ଏବଂ ସେମାନଙ୍କୁ ନ୍ୟାୟାଳୟରେ ଅପମାନ ଦେଇଥିବାରୁ ସରକାର ତାଙ୍କୁ ସେ ପଦବୀରୁ ଅନ୍ୟତ୍ର ବଦଳି କରିବାକୁ ମଧ୍ୟ ସ୍ୱୀକାର କଲେ । କିନ୍ତୁ ସେଥିରେ କିଛି ଫଳ ହେଲା ନାହିଁ । ସର୍ଦ୍ଦାର ଭଗତ୍ ସିଂହ ଏବଂ ତାଙ୍କର ସହଯୋଗୀ ବନ୍ଧୁମାନେ ବିଚାରାଳୟକୁ ନ ଯିବା ପାଇଁ ସ୍ଥିର କରିନେଇଥିବାରୁ ତାର କୌଣସି ପରିବର୍ତ୍ତନ ସମ୍ଭବ ହେଲା ନାହିଁ ।

## ବିପ୍ଳବର ନବମ ଦର୍ଶ-ଲାହୋର ଷଡ଼ଯନ୍ତ୍ର ମାମଲାର ପରବର୍ତ୍ତୀ ଘଟଣା

ପୂର୍ବ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଯେ, ସ୍ୱତନ୍ତ୍ର ନ୍ୟାୟାଳୟରେ ଆସାମୀମାନଙ୍କୁ ହାତକଡ଼ି ପିନ୍ଧାଇବା ପ୍ରଶ୍ନ ଉଠିବାରୁ ସେମାନେ ସେଠାକୁ ଯିବା ବନ୍ଦକରି ଦେଇଥିଲେ । ସରକାର ନାନା ଚେଷ୍ଟା କରି ମଧ୍ୟ ଆସାମୀମାନଙ୍କୁ ଅଦାଲତକୁ ନେଇ ପାରିଲେ ନାହିଁ । ଫଳରେ ଉକ୍ତ ନ୍ୟାୟାଳୟର ବିଚାରକମାନଙ୍କୁ ଏକତରଫା ବିଚାର କରିବାକୁ ପଡ଼ିଲା ଏବଂ ଆସାମୀମାନଙ୍କ ଅନୁପସ୍ଥିତିରେ ମଧ୍ୟ ମୋକଦ୍ଦମା ନିଷ୍ପତ୍ତି ହୋଇଗଲା । ଆସାମୀମାନେ ଅଦାଲତରେ ଉପସ୍ଥିତ ନଥିବାରୁ ସେମାନଙ୍କୁ ଏ ନିଷ୍ପତ୍ତି ଶୁଣାଇବା ପାଇଁ ୧୯୩୦ ମସିହା ଅକ୍ଟୋବର ମାସ ୭ ତାରିଖ ଦିନ ଉକ୍ତ ସ୍ୱତନ୍ତ୍ର ଅଦାଲତରୁ ଜଣେ ଦୂତଙ୍କୁ ସ୍ୱତନ୍ତ୍ର ଭାବରେ ଜେଲକୁ ପ୍ରେରଣ କରାଯାଇଥିଲା । ଲାହୋର ଷଡ଼ଯନ୍ତ୍ର ମାମଲାର ନିଷ୍ପତ୍ତି ପରେ ଦୂତ ହାତରେ ଏ ଯେଉଁ ଆଦେଶ ପ୍ରେରଣ କରାଯାଇଥିଲା, ତାହା ଆସାମୀମାନଙ୍କ ପାଇଁ ଅତିଶୟ ଦୁଃଖଦାୟକ ଥିଲା । ଏ ଆଦେଶ ସୁଖ୍ ଦେବ, ଶିବରାମ, ରାଜଗୁରୁ ଏବଂ ସର୍ଦ୍ଦାର ଭଗତ୍ ସିଂହଙ୍କ ଫାଶୀଦଣ୍ଡ ବ୍ୟତୀତ ଅନ୍ୟ କିଛି ନଥିଲା ।

ନିଷ୍ପତ୍ତି ଶୁଣାଇବାର ତାରିଖଟି ଖୁବ୍ ଗୋପନୀୟ ରଖାଯାଇଥିଲା । ଅଦାଲତ ନିଷ୍ପତ୍ତି ଶୁଣାଇବାର ତିନିଦିନ ପୂର୍ବରୁ ମୃତ୍ୟୁଦଣ୍ଡରେ ଦଣ୍ଡିତ ଏହି

ବିପ୍ଳବୀ ବନ୍ଦୀମାନଙ୍କ ଉଦ୍ଦେଶ୍ୟରେ ଏକ ,ସ୍ୱତନ୍ତ୍ର ଭୋଜିର ଆୟୋଜନ କରାଯାଇଥିଲା । ଏହି ଭୋଜିରେ ଜେଲ ଅଧ୍ୟକ୍ଷ ମଧ୍ୟ ଯୋଗ ଦେଇଥିଲେ । ଏହି ଅବସରରେ ବନ୍ଦୀମାନଙ୍କୁ ବିଦାୟ-ବାର୍ତ୍ତା ମଧ୍ୟ ଦିଆଯାଇଥିଲା । ଆକର୍ଷଣ ଓ ଉତ୍ତେଜନା ମଧ୍ୟରେ ତିନୋଟିଦିନ କୁଆଡ଼େ ଅତିବାହିତ ହୋଇଗଲା । ଇତି ମଧ୍ୟରେ ଜେଲ ମଧ୍ୟରେ ଥିବା ବନ୍ଦୀମାନେ ଶୁଣିବାକୁ ପାଇଲେ ଯେ, ଜେଲ ବାହାରେ ସ୍ୱତନ୍ତ୍ର ସଶସ୍ତ୍ର ପୁଲିସ ବାହିନୀକୁ ମୁତୟନ କରାଯାଇଛି । ସତର୍କତା ଅବଲମ୍ବନ କରିବା ପାଇଁ ସରକାର ଏ ବ୍ୟବସ୍ଥା କରିଥିଲେ । ସର୍ଦ୍ଦାର ଭଗତ୍ ସିଂହ ଏବଂ ତାଙ୍କର ଅନ୍ୟ ଜନବନ୍ଧୁଙ୍କୁ ଯଥା ସମୟରେ ଫାଶୀ ଆଦେଶ ଶୁଣାଇ ଦିଆଗଲା । ଏ ଦାରୁଣ ସମ୍ବାଦ ଦାବାଗ୍ନି ଭଳି ଦେଶର ଚତୁର୍ଦ୍ଦିଗକୁ ବ୍ୟାପିଗଲା । କର୍ତ୍ତୃପକ୍ଷ ସଙ୍ଗେ ସଙ୍ଗେ ସହରରେ ୧୪୪ଧାରା ଜାରି କରିଦେଲେ । ସଭାସମିତି ଏବଂ ଶୋଭାଯାତ୍ରା ଉପରେ ମଧ୍ୟ ନିଷେଧାଜ୍ଞା ଜାରି କରାଗଲା । ଏହି କାରଣରୁ ସହର ସୀମା ବାହାରେ ଥିବା ମ୍ୟୁନିସିପାଲିଟି ପଡ଼ିଆରେ ଜନସାଧାରଣଙ୍କ ତରଫରୁ ଏକ ବିରାଟ ସଭାର ଆୟୋଜନ କରାଯାଇଥିଲା । ଏ ସଭାରେ ବିଭିନ୍ନ ବକ୍ତାମାନେ ସରକାରଙ୍କ ଏକତରଫା ବିଚାର ଓ ଦାରୁଣ ଦଣ୍ଡବିଧିକୁ ତୀବ୍ର ଭାବରେ ନିନ୍ଦା କରିବାକୁ ଲାଗିଲେ । ଏଥିପାଇଁ ଦେଶର ତତ୍କାଳୀନ ପ୍ରତିଷ୍ଠିତ ଓ ପ୍ରଭାବଶାଳୀ ପତ୍ରପତ୍ରିକା ଗୁଡ଼ିକର ବିଶେଷାଙ୍କ ଅପ୍ରତ୍ୟାଶିତ ପ୍ରକାଶ ପାଇଲା ଏବଂ ସେଥିରେ ଲାହୋର ଷଡ଼ଯନ୍ତ୍ରରେ ଦଣ୍ଡିତ ସମସ୍ତ ବିପ୍ଳବୀ ବୀରମାନଙ୍କ ଫଟୋ ଛପା ଯାଇଥିଲା । ପୁଲିସ ଏବଂ ଜେଲ ଅଧ୍ୟକ୍ଷଙ୍କ କଡ଼ା ସତର୍କତା ସତ୍ତ୍ୱେ ସେମାନଙ୍କର ଫଟୋ କପରି ଭାବରେ ପତ୍ରପତ୍ରିକାଗୁଡ଼ିକୁ ପଠାଯାଇ ପାରିଥିଲା ତାହା ଚିନ୍ତା କଲେ ବିସ୍ମିତ ହେବାକୁ ପଡ଼େ ।

ତହିଁପରଦିନ; ଅର୍ଥାତ୍ ଅକ୍ଟୋବର ମାସ ୮ ତାରିଖ ଦିନ ଲାହୋର ତଥା ଭାରତର ପ୍ରାୟ ସମସ୍ତ ବଡ଼ ବଡ଼ ସହରରେ ଉକ୍ତ ଦୁଃଖଦାୟକ ସମ୍ବାଦ ପ୍ରଚାରିତ ହେବା ଦ୍ୱାରା ବିଶେଷ କରି ସେଠାକାର ଯୁବକ ଓ ନାରୀମାନଙ୍କ ମଧ୍ୟରେ ଉତ୍ସାହ ଓ ଉତ୍ତେଜନା ଖେଳିଗଲା । ଲାହୋର ସହରର ଛାତ୍ରମାନେ ବିଭିନ୍ନ ସ୍ଥାନରେ ସଭାସମିତିମାନ ଆୟୋଜନ କରିବାକୁ ଲାଗିଲେ ।

ଶ୍ରେଣୀରେ ଯୋଗ ନଦେଇ ସ୍କୁଲ କଲେଜର ଛାତ୍ରଛାତ୍ରିମାନେ ସମଗ୍ର ସହରରେ ହରତାଳ ପାଳନ କରିବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇବାକୁ ଲାଗିଲେ ଏହି କାରଣରୁ ଅନେକ ଶିକ୍ଷାନୁଷ୍ଠାନ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା । ଯେଉଁ ଅନୁଷ୍ଠାନଗୁଡ଼ିକ ବନ୍ଦ ହୋଇ ନଥିଲା, ସେଗୁଡ଼ିକ ଆଗରେ ଦଳ ଦଳ ଛାତ୍ର ପିକେଟିଂ କରିବାକୁ ଏବଂ ଧାରଣା ଦେବାକୁ ଲାଗିଲେ । ଏଥିପାଇଁ ମାତାଜୀ ଭୁହାଯାଉଥିବା ଜଣେ ବୟୋବୃଦ୍ଧା ବୃଦ୍ଧାଙ୍କ ସମେତ ବହୁ ଯୁବକ ଓ ମହିଳାଙ୍କୁ ଗିରଫ କରାଗଲା । ଲାହୋରସ୍ଥ ଡି. ଏ. ଭି. କଲେଜର ଜଣେ ପ୍ରାଧ୍ୟାପକ ଏବଂ ଅଶୀ ଜଣ ଛାତ୍ରଙ୍କ ଉପରେ ଜଣେ ପୁଲିସ ସର୍ଜେଣ୍ଟ ଅତ୍ୟାଚାର କରିବାକୁ ଲାଗିଲେ । ସେଠାରେ ଜନତା ଏବଂ ଛାତ୍ରଙ୍କ ଭିଡ଼ ଉପରେ ପୁଲିସଙ୍କ ତରଫରୁ ଅନେକଥର ଲାଠିଚାଳନା କରାଯାଇଥିଲା । ବିଶେଷତଃ ଯେଉଁମାନେ ସରକାରୀ କଲେଜରେ ପିକେଟିଂ ବା ଧାରଣା ଦେଇଥିଲେ, ସେମାନଙ୍କ ଉପରେ ଅଧିକ ନିଷ୍ଠୁର ଭାବରେ ଲାଠି ପ୍ରହାର କରାଯାଇଥିଲା ।

ସନ୍ଧ୍ୟା ସମୟକୁ ଏକ ବିରାଟ ପଟୁଆରର ଆୟୋଜନ କରାଯାଇଥିଲା । ସେଥିରେ 'ଭଗତ ସିଂହ ଜିନ୍ଦାବାଦ୍' 'ସୁଖଦେବ ଜିନ୍ଦାବାଦ୍' 'ରାଜଗୁରୁ ଜିନ୍ଦାବାଦ୍' ଇତ୍ୟାଦି ସ୍ଲୋଗାନମାନ ଦିଆଯାଉଥିଲା । ବର୍ଲୋ (ବ୍ରେଡ଼ଲ ହଲରେ ଛାତ୍ର ଏବଂ ଯୁବକମାନଙ୍କର ଏକ ବିରାଟ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଭଗତ ସିଂହ ଏବଂ ତାଙ୍କ ସହଯୋଗୀମାନଙ୍କୁ ଲୋକମାନଙ୍କର ତ୍ୟାଗ ଓ ଆତ୍ମବଳି ଦାନ ପାଇଁ ଭୂରି ଭୂରି ପ୍ରଶଂସା କରିବା ସଙ୍ଗେ ସଙ୍ଗେ ସେହିପରି ତ୍ୟାଗ ସ୍ୱୀକାର କରିବା ନିମିତ୍ତ ଏକ ପ୍ରସ୍ତାବ ଆଗତ କରାଯାଇଥିଲା । ସେଦିନ ସନ୍ଧ୍ୟାର ଠିକ ସେହି ସମୟରେ ମୋଚି ଗେଟ ବାହାରେ ଥିବା ନଗରପାଳିକା ମୈଦାନରେ ଆଉ ଏକ ବିରାଟ ସଭା ମଧ୍ୟ ଅନୁଷ୍ଠିତ ହୋଇଥିଲା । ଏ ସଭାରେ ଅଧ୍ୟକ୍ଷତା କରିଥିଲେ ଲାଲା ଲଜପତ୍ ରାୟଙ୍କ କନ୍ୟା ଶ୍ରୀମତୀ ପାର୍ବତୀ ଦେବୀ । ଅନ୍ୟୂନ ବାର ହଜାର ଲୋକ ଏ ସଭାରେ ଯୋଗ ଦେଇଥିଲେ ।

ବକ୍ସା କ୍ୟାମ୍ପରେ ବଙ୍ଗଳାର ବହୁ ବିପ୍ଳବୀଙ୍କୁ ନଜର ବନ୍ଦୀରେ ରଖାଯାଇଥିଲା । ଭଗତ୍ ସିଂହ, ସୁଖଦେବ ଏବଂ ରାଜଗୁରୁଙ୍କ ଫାଶୀଦଣ୍ଡକୁ

ସ୍ଥଗିତ ରଖିବା ପାଇଁ ସେମାନେ ବଡ଼ଲାଟଙ୍କୁ ଅନୁରୋଧ କରିବେ ବୋଲି ସ୍ଥିର କରିଥିଲେ । ବଡ଼ଲାଟ ଯଦି ଏଥିରେ ଅସମ୍ମତ ହୁଅନ୍ତି ତେବେ ସେମାନେ ଭଗତ ସିଂହ ଇତ୍ୟାଦିଙ୍କ ମୃତ୍ୟୁ ଦଣ୍ଡର ଉପଯୁକ୍ତ ପ୍ରତିଶୋଧ ନେବେ ବୋଲି ମଧ୍ୟ ବଡ଼ଲାଟଙ୍କୁ ସିଧାସଳଖ ଜଣାଇ ଦେବାକୁ ମନସ୍ଥ କରିଥିଲେ । ନଜର-ବନ୍ଦୀରେ ଥିବା ଏହି ବିପ୍ଳବୀମାନଙ୍କ ସଭାରେ ଅଧ୍ୟକ୍ଷତା କରିଥିଲେ ଶ୍ରୀ ସୁରେନ୍ଦ୍ରମୋହନ ଘୋଷ । ବଡ଼ଲାଟଙ୍କ ପାଖକୁ ଏହି ମର୍ମରେ ଯେଉଁ ପତ୍ର ଲେଖା ଯାଇଥିଲା ସେଥିରେ ଶ୍ରୀ ଘୋଷ ନିଜର ଦସ୍ତଖତ ଦେଇଥିଲେ । ସର୍ଦ୍ଦାର ଭଗତ ସିଂହ ଇତ୍ୟାଦିଙ୍କ ଫାଶୀଦଣ୍ଡକୁ ସ୍ଥଗିତ ରଖିବା ପାଇଁ ପଣ୍ଡିତ ମୋତିଲାଲ ନେହେରୁ ମଧ୍ୟ ବହୁ ଯତ୍ନ କରିଥିଲେ । ଏଥିପାଇଁ ସେ କରଣଶଙ୍କର ରାୟ ଏବଂ ମନମୋହନ ଭଟ୍ଟାଚାର୍ଯ୍ୟଙ୍କ ଜରିଆରେ ମହାତ୍ମାଗାନ୍ଧୀଙ୍କ ସାହାଯ୍ୟ ଭିକ୍ଷା ମଧ୍ୟ କରିଥିଲେ ।

ସର୍ଦ୍ଦାର ଭଗତ ସିଂହ ଇତ୍ୟାଦିଙ୍କୁ ଫାଶୀଦଣ୍ଡ ଦିଆହେବା ପୂର୍ବରୁ ମଧ୍ୟ ସରକାରଙ୍କର ଏ ଏକ ତରଫା ବିଚାରର ପ୍ରତିଶୋଧ ନେବା ପାଇଁ ବିପ୍ଳବୀମାନେ କେତେକ ସ୍ଥାନରେ ଉଦ୍ୟମ କରିଥିଲେ । ଉଦାହରଣ ସ୍ୱରୂପ ମେଦିନୀପୁର ଜିଲ୍ଲା ମାଜିଷ୍ଟ୍ରେଟ୍ ଏବଂ ଡିପେରିର ମାଜିଷ୍ଟ୍ରେଟ୍‌ଙ୍କୁ ଭଗତ ସିଂହ ଇତ୍ୟାଦି ମୃତ୍ୟୁଦଣ୍ଡା ଦେଶ ଶୁଣାଇ ଦିଆଯିବା ପରେ ପରେ ହିଁ ହତ୍ୟା କରାଯାଇଥିଲା । ଚଟ୍ଟଗ୍ରାମ ଅସ୍ତ୍ରାଗାରଲୁଟ୍ ମାମଲାରେ ଅଭିଯୁକ୍ତ ଆସାମୀମାନଙ୍କୁ ମଧ୍ୟ ଫାଶୀଦଣ୍ଡ ଆଦେଶ ଦିଆଯାଇଥିଲା । ସେମାନେ ଏ ଦଣ୍ଡରୁ ମୁକ୍ତ ପାଇବା ପାଇଁ ଗାନ୍ଧୀଜୀଙ୍କୁ ହସ୍ତକ୍ଷେପ କରିବାକୁ ଅନୁରୋଧ କରିବାକୁ ଅନୁରୋଧ କରିଥିଲେ । ପଞ୍ଜାବର ସବୁ ଜିଲ୍ଲା ଏବଂ ଭାରତର ସମସ୍ତ ବଡ଼ ବଡ଼ ସହରମାନଙ୍କରେ ହରତାଳ ପାଳିତ ହୋଇଥିଲା । ଅମୃତ ସହରରେ ଏପରି ଉତ୍ସାହର ସହିତ ହରତାଳ ପାଳିତ ହୋଇଥିଲା ଯେ, ସେବାକାର ସଡ଼କରେ ଯାନବାହାନ ଚଳାଚଳ ମଧ୍ୟ ସ୍ଥଗିତ ରହିଥିଲା । ଲାହୋର ସହରରେ ସମ୍ପୂର୍ଣ୍ଣ ହରତାଳ ପାଳିତ ହୋଇ ପାରିଥିଲା । ଏହା ବ୍ୟତୀତ ଦିଲ୍ଲୀ, ବମ୍ବେ, କାନପୁର, ଏଲାହାବାଦ୍, କଲିକତା ଏବଂ ଅନ୍ୟାନ୍ୟ

ବଡ଼ ବଡ଼ ସହର ମାନଙ୍କରେ ସାଧାରଣ ସଭାସମିତିର ଆୟୋଜନ କରଯାଇ ସର୍ଦ୍ଦାର ଭଗତ ସିଂହ ଏବଂ ତାଙ୍କ ସାଥୀମାନଙ୍କ ପ୍ରତି ସ୍ନେହ ଓ ସମ୍ମାନ ପ୍ରଦର୍ଶନ କରଯାଇଥିଲା ।

ରାଜନୈତିକ ବ୍ୟାପାରରେ ଅଭିଯୁକ୍ତ ବିପ୍ଳବୀ ଆସାମୀମାନଙ୍କୁ ଦାରୁଣ ମୃତ୍ୟୁ ଦଣ୍ଡରୁ ରକ୍ଷା କରିବା ପାଇଁ ଲାହୋର ସହରରେ 'ଡିଫେନ୍‌ସ-ସମିତି' ନାମକ ଏକ ଅନୁଷ୍ଠାନ ଗଢ଼ାଯାଇଥିଲା । ଏଠାରେ ଏହି ସମିତି ସମ୍ବନ୍ଧରେ କିଞ୍ଚିତ ଆଲୋକପାତ କରିବା ଏକାନ୍ତ ବିଧେୟ । ପୁଲିସ ଲାହୋରରେ ବିପ୍ଳବୀମାନଙ୍କ ବିରୁଦ୍ଧରେ ଏକ ବିରାଟ ଷଡ଼ଯନ୍ତ୍ର ମାମଲା ଆରମ୍ଭ କରିଦେଇ-ଥିବା ସଙ୍ଗେ ସଙ୍ଗେ ଦେଶର ଅନେକ ହିନ୍ଦୁ, ମୁସଲମାନ ତଥା ଶିଖ ନେତାମାନେ ଉକ୍ତ ମାମଲାରେ ଅଭିଯୁକ୍ତ ବିପ୍ଳବୀମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବାକୁ ଆରମ୍ଭ କରିଦେଲେ । ସହାନୁଭୂତି ପ୍ରକାଶ କରୁଥିବା ନେତାମାନଙ୍କ ମଧ୍ୟରେ ଡକ୍ଟର ସଫିଉଦ-ଦୀନ କିଚଲୁ, ସର୍ଦ୍ଦାର ଶାର୍ଦ୍ଦୂଳ ସିଂହ କବୀଶ୍ୱର, ବାବୁ ପୁରୁଷୋତ୍ତମ ଦାସ ଟଣ୍ଡନ ଡଃ ଗୋପୀଚନ୍ଦ୍ର ଓ ଲାଲା ଦୁନିଚନ୍ଦ ଆଦିଙ୍କ ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ୧୯୨୯ ମସିହା ଜୁନ ମାସ ମଧ୍ୟରେ ଲାହୋରରେ ଏହି 'ଡିଫେନ୍ସ ସମିତି' ଗଢ଼ା ଯାଇଥିଲା । ଏହି ସଙ୍ଗଠନ ନାନା ସରକାରୀ ମାମଲାରେ ଅଭିଯୁକ୍ତ ବିପ୍ଳବୀ ଆସାମୀମାନଙ୍କୁ ସାହାଯ୍ୟ ଏବଂ ରକ୍ଷା କରିବା ପାଇଁ ତଥା ସେମାନଙ୍କ ଅନୁପସ୍ଥିତିରେ ସେମାନେ ପରିବାର ବର୍ଗଙ୍କୁ ଆର୍ଥିକ ସାହାଯ୍ୟ ଦେବାପାଇଁ ଦେଶର ଚାରିଆଡ଼େ ଚାନ୍ଦାଆଦାୟ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ଅଳ୍ପ ଦିନ ମଧ୍ୟରେ ବହୁ ପରିମାଣର ଅର୍ଥ ଆଦାୟ ହୋଇପାରିଥିଲା । ଦେଶର ଅଗଣିତ ଦରିଦ୍ର ଜନତା ମଧ୍ୟ ସେମାନଙ୍କର କ୍ଷମତାନୁସାରେ ଏ ସଙ୍ଗଠନକୁ ମୁକ୍ତ ହସ୍ତରେ ଦାନ କରିବାକୁ ଲାଗିଲେ । ଚାନ୍ଦାଆଦାୟ ରସିଦରୁ ଜଣାଯାଏ ଯେ, ଅନ୍ୟୂନ ତିରିଶ ହଜାର ଗରିବ ଲୋକ ଚାନ୍ଦାଦାନ ଅଭିଯାନରେ ଯୋଗ ଦେଇଥିଲେ ।

କେବଳ ଆସାମୀମାନଙ୍କୁ ଆଇନ କବଳରୁ ରକ୍ଷା କରିବାକୁ 'ବନ୍ଦୀଅ-ସମିତି' ତତ୍ପର ନ ଥିଲା । କାରଣ ଏ ପ୍ରକାର ଧାରଣାକୁ ବିପ୍ଳବୀ-ମାନେ ପସନ୍ଦ କରୁନଥିଲେ । ଅନ୍ୟାନ୍ୟ ଉପାୟରେ ବିପ୍ଳବୀମାନଙ୍କୁ ସାହାଯ୍ୟ କରିବା ପାଇଁ ମଧ୍ଯ ଏହି ସଙ୍ଗଠନ ତତ୍ପର ହୋଇ ଉଠିଥିଲା । ଉଦାହରଣ ସ୍ୱରୂପ ଯେଉଁ ଆସାମୀମାନେ ଜେଲ ମଧ୍ୟରେ ପୁସ୍ତକ ପାଠ କରିବାକୁ ଭଲ ପାଉଥିଲେ, ଏହି ସମିତିର ସଭ୍ୟମାନେ ସେମାନଙ୍କୁ ସେମାନଙ୍କର ଇଚ୍ଛା ଅନୁସାରେ ପୁସ୍ତକ ଯୋଗାଇ ଦେଉଥିଲେ । ଆସାମୀ ମାନଙ୍କ ସହିତ ସାକ୍ଷାତ କରିବାକୁ ଆସୁଥିବା ସେମାନଙ୍କର ଆତ୍ମୀୟ ସ୍ୱଜନ ମାନଙ୍କର ରହିବା ଓ ଖାଇବାର ବ୍ୟବସ୍ଥା ମଧ୍ୟ ସେହିମାନେ କରୁଥିଲେ । ଦରକାର ପଡ଼ିଲେ ସେମାନେ ଏହି ଆଗନ୍ତୁକ ମାନଙ୍କୁ ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ ।

ସ୍ୱତନ୍ତ୍ର ଟ୍ରାଇବ୍ୟୁନାଲରେ ଆସାମୀମାନଙ୍କୁ ଏକତରଫା ବିଚାର କରି ଫାଶୀ ଦଣ୍ଡାଦେଶ ଦିଆହେଲା ପରେ ଏହି 'ବନ୍ଦୀଅ-ସମିତି' ପ୍ରିଭି କାଉନ୍-ସିଲରେ ଅପିଲ୍ କରିବାକୁ ସ୍ଥିର କଲେ । ଭଗତ ସିଂହ ଏବଂ ତାଙ୍କର ସାଥୀମାନେ ଏ ପ୍ରଶ୍ନ ଉପରେ ନୀତି ନିର୍ଦ୍ଧାରଣ କରି ସାରିଥିଲେ । ଭଗତ ସିଂହଙ୍କ ମତରେ ଏ ମାମଲାର ବିଚାର ଯଦି ପ୍ରିଭି କାଉନ୍‌ସିଲଙ୍କ ହୋଇ ପାରେ ତେବେ ବିଦେଶରେ ବିପ୍ଳବୀ ଦଳର ପ୍ରଚାର ସହଜରେ ହୋଇ ପାରିବ । ପ୍ରିଭି କାଉନ୍‌ସିଲରେ ଅପିଲ୍ କରିବାଦ୍ୱାରା ଭଗତ ସିଂହ ଭାରତର ରାଜନୈତିକ ବନ୍ଦୀମାନଙ୍କ ପ୍ରତି ହେଉଥିବା ଅମାନୁଷିକ ଅତ୍ୟାଚାର ବିଷୟରେ ପୃଥିବୀର ସଭ୍ୟ ଦେଶମାନଙ୍କୁ ସଚେତନ କରି ଦେବାକୁ ଚାହୁଁଥିଲେ । ଏ ଅପିଲଦ୍ୱାରା ସଭ୍ୟଦେଶ ମାନଙ୍କ ସମକ୍ଷରେ ସାହସୀ ଯତୀନ୍ଦ୍ରନାଥ ଦାସଙ୍କ ନିଃସ୍ୱାର୍ଥପର ବଳିଦାନର ଏକ ଉଦାହରଣ ମଧ୍ୟ ଉପସ୍ଥାପିତ କରାଯାଇ ପାରିଥାନ୍ତା । ପ୍ରିଭି କାଉନ୍ ସିଲରେ ଅପିଲ କରିବାର ଆଉ ଏକ ଉଦ୍ଦେଶ୍ୟ ମଧ୍ୟ ଥିଲା । ଏହାଦ୍ୱାରା ବିପ୍ଳବୀମାନେ ଇଂଲଣ୍ଡର ଶତ୍ରୁ ରାଷ୍ଟ୍ରମାନଙ୍କୁ ଜଣାଇ ଦେବାକୁ ଚାହୁଁଥିଲେ ଯେ, ଭାରତରେ ମଧ୍ୟ ଇଂରେଜ

ଶାସନ ବିରୋଧୀ ଏକ ସମାଜବାଦୀ ବିପ୍ଳବୀଦଳର ଅସ୍ତିତ୍ୱ ଅଛି । କିନ୍ତୁ ଗୋଟିଏ ବିଷୟରେ ସର୍ଦ୍ଦାର ଭଗତ ସିଂହ 'ଦିଜାଅ-ସମିତି' ସପକ୍ଷରେ ଲଢ଼ୁଥିବା ଓକିଲମାନଙ୍କୁ ସଚେତନ କରାଇ ଦେଇଥିଲେ । ସେ ସେମାନଙ୍କୁ କଡ଼ା ନିର୍ଦ୍ଦେଶ ଦେଇ କହିଥିଲେ ଯେ, ଆସାମୀମାନଙ୍କୁ ରକ୍ଷା କରିବାକୁ ପାଇଁ ସେମାନେ ଯେପରି ଅଦାଲତରେ ଆସାମୀମାନେ ବିପ୍ଳବୀଦଳ ଭୁକ୍ତ ନୁହନ୍ତି ବୋଲି ପ୍ରମାଣିତ କରିବାକୁ ଉଦ୍ୟମ ନ କରନ୍ତି । ତାହା ହେଲେ ଭାରତୀୟ ବିପ୍ଳବୀଦଳର ଅସ୍ତିତ୍ୱ ବିଜୟୀ ରହିପାରିବ । ଏହାଛଡ଼ା ଫାଶୀଦଣ୍ଡ ଦେବାର ସମୟକୁ ଅନ୍ତତଃ କିଛିଦିନ ସ୍ଥଗିତ ରଖିବା ଏ ଅପିଲର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା । ଏହାଦ୍ୱାରା ଦେଶର ଲୋକଙ୍କୁ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରିବା ପାଇଁ ଅଧିକ ସୁବିଧା ମିଳିବ ବୋଲି ସର୍ଦ୍ଦାର ଭଗତ ସିଂହଙ୍କର ସ୍ୱତନ୍ତ୍ର ଆଶା ଥିଲା ।

ଇତି ମଧ୍ୟରେ ଭାରତୀୟ କଂଗ୍ରେସ କାଳେ ଇଂରେଜ ସରକାରଙ୍କ ସହିତ କୌଣସି ପ୍ରକାର ଅପମାନଜନକ ରାଜିନାମା କରି ପକାଇବ, ସେଥିପାଇଁ ସର୍ଦ୍ଦାର ଭଗତ ସିଂହ ଏବଂ ତାଙ୍କର ସହଚରମାନେ ବିଶେଷ ଶଙ୍କିତ ଥିଲେ । ଏପରି ରାଜିନାମା କଲାପରେ ଯଦି ସର୍ଦ୍ଦାର ଭଗତ ସିଂହ ଏବଂ ତାଙ୍କ ସାଥୀମାନଙ୍କୁ ଫାଶୀ ଦିଆଯାଏ, ତେବେ ଦେଶର ଅଗଣିତ ଜନତା କଂଗ୍ରେସ ଉପରୁ ଯେ ଆସ୍ଥା ହରାଇ ବସିବେ ଏଥିରେ ଭଗତ ସିଂହଙ୍କର ଟିକେ ହେଲେ ସନ୍ଦେହ ନ ଥିଲା । ଭଗତ ସିଂହ ଯାହା ଭାବିଥିଲେ, ତାଙ୍କୁ ଫାଶୀ ଦେଲାପରେ ଠିକ୍ ସେଇଆ ଘଟିଲା । ଏଥିରୁ ତାଙ୍କ ଦୂର ଦୃଷ୍ଟିର ପରିଚୟ ମିଳେ ।

## ବିପ୍ଳବ ଅନ୍ତିମପର୍ବ-ଫାଶୀଦଣ୍ଡ

ଲାହୋର ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ସର୍ଦ୍ଦାର ଭଗତ ସିଂହ ଏବଂ ତାଙ୍କର ସାଥୀମାନଙ୍କୁ ଫାଶୀଦଣ୍ଡରୁ ରକ୍ଷା କରିବା ପାଇଁ 'ଦିଜାଅ-ସମିତି' ପକ୍ଷରୁ ପ୍ରିଭି କାଉନସିଲରେ ଅପିଲ୍ ବିଷୟ ପୂର୍ବ ଅଧ୍ୟାୟରେ ଉଲ୍ଲେଖ

କରାଯାଇଛି । କିନ୍ତୁ ଏ ଅପିଲ ନିରର୍ଥକ ହେବାରୁ ଉକ୍ତ ସମିତିର ସଦସ୍ୟମାନେ ଫାଶୀଦଣ୍ଡ ବିରୁଦ୍ଧରେ ଏକ ସୁସଙ୍ଗଠିତ ଆନ୍ଦୋଳନ ଆରମ୍ଭ କରିଦେଲେ । ମହାତ୍ମା ଗାନ୍ଧୀ ମଧ୍ୟ ଏ ବିପ୍ଳବୀ ଯୁବକମାନଙ୍କ ପ୍ରାଣରକ୍ଷା କରିବା ପାଇଁ ଯଥାସାଧ୍ୟ ଉଦ୍ୟମ ଚଳାଇଥିଲେ । ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ମଧ୍ୟସ୍ଥତାରେ ଯତୀନ୍ଦ୍ରନାଥ ସାନ୍ୟାଲ ଛଦ୍ମ ବେଶରେ ଏଲାହାବାଦରେ ଗାନ୍ଧିଜୀଙ୍କୁ ସାକ୍ଷାତ କରିଥିଲେ । ଗାନ୍ଧିଜୀ ଯଥାସାଧ୍ୟ ସାହାଯ୍ୟ କରିବେ ବୋଲି ତାଙ୍କୁ ଆଶ୍ୱାସନା ଦେଇଥିଲେ । କିନ୍ତୁ ସେ ଏ କଥାକୁ ଅନ୍ୟ କାହାରି ସହିତ ଚର୍ଚ୍ଚା ନ କରି ନିଜ ମଧ୍ୟରେ ସୀମିତ ରଖିବାକୁ ଆଗ୍ରହ ପ୍ରକାଶ କରିଥିଲେ ।

ପରେ ଜଣାପଡ଼ିଲା ଯେ, ତତ୍କାଳୀନ ବଡ଼ଲାଟ୍ ଲର୍ଡ଼ ଇର୍‌ୱିନ୍ ଏ ବିଷୟରେ ଗାନ୍ଧିଜୀଙ୍କ ଅନୁରୋଧ ରକ୍ଷା କରିଛନ୍ତି । ତେଣୁ ସେ ଫାଶୀ ପରିବର୍ତ୍ତେ ଉକ୍ତ ବିପ୍ଳବୀ ଯୁବକମାନଙ୍କୁ ନିର୍ବାସନ ଦଣ୍ଡ ଦେବାକୁ ଆଦେଶ ଦେଇଥିଲେ । ତାରଦ୍ୱାରା ପଞ୍ଜାବ ସରକାରଙ୍କୁ ମଧ୍ୟ ଏ ଖବର ଜଣାଇଦେବା ପାଇଁ ମଧ୍ୟ ସେ ନିର୍ଦ୍ଦେଶ ଦେଇଥିଲେ; ତେଣୁ ଚିଫ୍ ସେକ୍ରେଟେରୀ ଏ ଖବର ପଠାଇବାରେ ବିଳମ୍ବ କରି ନ ଥିଲେ । କିନ୍ତୁ ଘରୋଇ ମନ୍ତ୍ରୀ ଏଥିରେ ବାଧା ସୃଷ୍ଟି କରିବାକୁ ଉଦ୍ୟମ ଚଳାଇଲେ । ସେ ପୋଷ୍ଟମାଷ୍ଟର ଜେନେରାଲ୍‌ଙ୍କୁ ଏ ଖବର ପଠାଇବାରେ ଜାଣିଶୁଣି ବିଳମ୍ବ କରିବା ନିମିତ୍ତ ପରାମର୍ଶ ଦେଇଥିଲେ । ଇତିମଧ୍ୟରେ ପଞ୍ଜାବ ରାଜ୍ୟ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ମିଳିଲା ଯେ, ସେ ଯେପରି ମାର୍ଚ୍ଚ ୨୩ ତାରିଖ ଦିନ ସୂର୍ଯ୍ୟୋଦୟ ପୂର୍ବରୁ ଭଗତ ସିଂହ ଓ ତାଙ୍କର ବିପ୍ଳବୀ ସାଥୀମାନଙ୍କୁ ନିଶ୍ଚିତ ଭାବରେ ଫାଶୀ କାଠରେ ଝୁଲାଇ ଦିଅନ୍ତି । ତାହା ହେଲେ ଫାଶୀ ବଦଳରେ ଆଜୀବନ କାରାଦଣ୍ଡ ଦେବାପାଇଁ ସ୍ୱୟଂ ବଡ଼ଲାଟ୍ ଯେଉଁ ଆଦେଶ ଦେଇଥିଲେ, ତାହା ବ୍ୟର୍ଥ ହୋଇଯିବ ।

ଭଗତ ସିଂହ ଏବଂ ତାଙ୍କ ଦୁଇ ସାଥୀଙ୍କ ଜୀବନର ଚରମ ମୁହୂର୍ତ୍ତ ଆସି ଉପନୀତ ହେଲା । ସେ ଦିନ ୧୯୩୧ ମସୀହା ମାର୍ଚ୍ଚ ମାସ ୨୩ ତାରିଖ ସୋମବାର । ସକାଳେ ଘଡ଼ିରେ ସାତଟା ପଇଁତିରିଶ ମିନିଟ୍ ବାଜିବା ସଙ୍ଗେ

*

ସଙ୍ଗେ ଭାରତର ଏହି ତିନିଜଣ ଯୁଗଜନ୍ମା ନାନ୍ତିକାସି ପୁରୁଷଙ୍କୁ ଲାହୋର ସେଣ୍ଟ୍ରାଲ୍ ଜେଲ୍ ମଧ୍ୟସ୍ଥ ଫାଶୀଖୁଣ୍ଟରେ ଝୁଲାଇ ଦିଆଗଲା । ପ୍ରଭାତ ଅରୁଣାଲୋକରେ ଆକାଶର ତିନୋଟି ଉଜ୍ଜ୍ୱଳ ନକ୍ଷତ୍ର ଯେପରି କ୍ଷଣକ ମଧ୍ୟରେ ମ୍ଳାନ ହୋଇଗଲେ । ଫାଶୀ ଦିଆ ହେବାର ପନ୍ଦର ମିନଟ୍ ପୂର୍ବରୁ ଜେଲର ଅଭ୍ୟନ୍ତର ପ୍ରଦେଶ କେତେକ୍ଷଣ ପାଇଁ 'ଇନ୍‌କିଲାବ୍ ଜିନ୍ଦାବାଦ୍' ଧ୍ୱନିରେ ମୁଖରିତ ହୋଇଉଠିଥିଲା । ତା'ପରେ ସବୁ ଶୂନଶାନ୍ ।

ଭଗତ୍ ସିଂହ ଯେଉଁ ଶାନ୍ତ ଓ ଆନନ୍ଦପୂର୍ଣ୍ଣ ହୃଦୟରେ ମୃତ୍ୟୁକୁ ଆଲିଙ୍ଗନ କଲେ, ତାହାର ସ୍ପଷ୍ଟ ସୂଚନା ତାଙ୍କ ବାଲ୍ୟକାଳରୁହିଁ ମିଳିଥିଲା । ନିଜର ଦୁଇ ବନ୍ଧୁଙ୍କ ସହିତ ଫାଶୀକାଠ ଉପରକୁ ଚଢ଼ିବା ସମୟରେ ସେ ବେଶ୍ ଶାନ୍ତ ଓ ପ୍ରସନ୍ନ ଦେଖାଯାଉଥିଲେ । ଶାସ୍ତିଦାନ କାର୍ଯ୍ୟ ସମ୍ପାଦନ କରିବା ଦାୟିତ୍ୱରେ ଥିବା ଇଉରୋପୀୟ ଡେପୁଟି କମିଶନରଙ୍କୁ ସମ୍ବୋଧନ କରି ମୁହଁରେ ସ୍ମିତହାସ୍ୟ ଫୁଟାଇ ସେ କହିଥିଲେ, "ଶ୍ରୀମାନ୍ ମାଜିଷ୍ଟ୍ରେଟ୍, ତୁମେ ଅତ୍ୟନ୍ତ ସୌଭାଗ୍ୟଶାଳୀ କାରଣ ଭାରତୀୟ ବିପ୍ଳବୀ କିପରି ନିଜର ସର୍ବୋଚ୍ଚ ଆଦର୍ଶ ପ୍ରତିପାଦନ କରିବା ନିମିତ୍ତ ମୃତ୍ୟୁକୁ ଆଲିଙ୍ଗନ କରିବ, ତାହା ଆଜି ତୁମେ ସ୍ୱଚକ୍ଷୁରେ ଦେଖିପାରିବ ।"

୧୯୩୧ ମସିହା ମାର୍ଚ୍ଚମାସ ୨୪ ତାରିଖ ମଙ୍ଗଳବାର ଦିନ ପ୍ରାତଃ କାଳରେ ଭାରତବର୍ଷର ପ୍ରତ୍ୟେକ ସହର ଏବଂ ନଗରର ଗଳି ଉପଗଳିରେ ଏକ ଅପୂର୍ବ ଶିହରଣ ଖେଳିଗଲା । ଭଗତ୍ ସିଂହଙ୍କ ମୃତ୍ୟୁ ଖବର ଦାବାଗ୍ନି ଭଳି ଚତୁର୍ଦ୍ଦିଗ ବ୍ୟାପିଗଲା । ସେଦିନ ସକାଳର ସମସ୍ତ ସମ୍ବାଦପତ୍ରରେ ଏହି ମର୍ମନ୍ତୁଦ ଖବର ମୁଖ୍ୟସ୍ଥାନ ଅଧିକାର କରିଥିଲା । ଭାରତ ବର୍ଷର ଫାଶୀ-ଦଣ୍ଡ ଇତିହାସରେ ଏହା ଏକ ଅଭୂତପୂର୍ବ ଘଟଣା । ଭଗତ ସିଂହ ଏବଂ ତାଙ୍କର ଦୁଇସାଥୀଙ୍କୁ ପୂର୍ବ ନିର୍ଦ୍ଧାରିତ ସମୟର ଦିନେ ପୂର୍ବରୁ ପ୍ରାତଃକାଳରେ ହଠାତ୍ କାହିଁକି କାରାଗାରର ଏକ ନିଭୃତସ୍ଥାନରେ ଫାଶୀ ଦିଆଗଲା, ତାହାର ରହସ୍ୟ ଉଦ୍‌ଘାଟନ କରିବା କଠିନ ବ୍ୟାପାର । ତେବେ ଭଗତ୍ ସିଂହଙ୍କୁ ମୃତ୍ୟୁ ଦଣ୍ଡରୁ ରକ୍ଷା କରିବା ସମ୍ବନ୍ଧରେ ବଡ଼ଲାଟ୍‌ଙ୍କ ଆଦେଶକୁ ଅବମାନନା କରିବା ପାଇଁ ଯେ ଏ ପନ୍ଥା ଗ୍ରହଣ କରାଯାଇଥିଲା, ସେଥିରେ ତିଳେ ମାତ୍ର

ସନ୍ଦେହ ନାହିଁ । ଏହାଛଡ଼ା ଏ ଫାଶୀଦଣ୍ଡ ବିରୁଦ୍ଧରେ ଦେଶବ୍ୟାପୀ ଜନମତ କ୍ରମଶଃ ଉଗ୍ର ହୋଇ ଉଠୁଥିଲା । ଭାରତରେ ଇଂରେଜଶାସନ କାଳ ମଧ୍ୟରେ କୌଣସି ଫାଶୀଦଣ୍ଡ ଆଦେଶକୁ ରଦ୍ଦ କରିବାପାଇଁ ଏତେ ବ୍ୟାପକ ପ୍ରୟାସ ଓ ପ୍ରଚେଷ୍ଟା କରାଯାଇ ନ ଥିଲା । ଇଂଲଣ୍ଡରେ ମଧ୍ୟ ଏହାର ପ୍ରଭାବ ଯଥେଷ୍ଟ ପଡ଼ିଲା । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, କ୍ରମଶଃ ଉଗ୍ରରୂପ ଧାରଣ କରୁଥିବା ଜନମତରେ ବଡ଼ଲାଟ୍ ମଧ୍ୟ ପ୍ରଭାବିତ ହୋଇ ଭଗତ୍ ସିଂହଙ୍କୁ ଫାଶୀଦଣ୍ଡରୁ ରକ୍ଷା କରିବା ନିମିତ୍ତ ସକ୍ରିୟ ପଦକ୍ଷେପ ନେବାକୁ ସ୍ଥିର କରିଥିଲେ ।

ଏହାପରେ ଗାନ୍ଧୀ-ଇର୍‌ଉଇନ୍ ଚୁକ୍ତି ସ୍ୱାକ୍ଷରିତ ହେଲା । ଏଥିରେ ସ୍ୱାଧୀନତାକାମୀ ଭାରତୀୟ ଯୁବକମାନଙ୍କର ଆତ୍ମବଳୀ ପ୍ରତି ବିଶେଷ ଜୋର ଦିଆଗଲା ନାହିଁ । କଂଗ୍ରେସ ନେତାମାନେ ହଠାତ୍ ଜାତୀୟ ଆନ୍ଦୋଳନକୁ ସ୍ଥଗିତ ରଖିଦେଲେ । ଫଳରେ ଇଂରେଜ ସରକାର ସ୍ୱସ୍ତିରେ ନିଶ୍ୱାସ ମାରିଲେ ଏବଂ ନିଶ୍ଚିନ୍ତ ଓ ନିଃସଙ୍କୋଚରେ ବିପ୍ଳବୀ ବୀରମାନଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇବାକୁ ଲାଗିଲେ । ଭଗତ୍ ସିଂହଙ୍କୁ ଯେଉଁ ମୃତ୍ୟୁଦଣ୍ଡ ଦିଆଗଲା, ସେ ତାହାହିଁ କାମନା କରୁଥିଲେ । ଗୋଟିଏ ବିପ୍ଳବୀ ପ୍ରାଣ ବିନିମୟରେ କୋଟିଏ ବିପ୍ଳବୀ ବୀର ସୃଷ୍ଟି କରିବା ଥିଲା ତାଙ୍କ ଜୀବନର ଏକ ମହାନ ଲକ୍ଷ୍ୟ । ସେଇଥିପାଇଁ ସେ ହସି ହସି ଫାଶୀକାଠ ଉପରକୁ ଚଢ଼ି ଯାଇଥିଲେ । ପ୍ରକୃତରେ ତାହାହିଁ ହେଲା । ଜୀବିତ ଭଗତ୍ ସିଂହ ଅପେକ୍ଷା ମୃତ ଭଗତ୍ ସିଂହଙ୍କ ପ୍ରଭାବ ଅଧିକ ଶକ୍ତିଶାଳୀ ବୋଲି ପରବର୍ତ୍ତୀ ଘଟଣାକୁ ସ୍ପଷ୍ଟ ପ୍ରମାଣିତ ହେଲା ।

ମୃତ୍ୟୁ ପୂର୍ବରୁ ସର୍ଦ୍ଦାର ଭଗତ୍ ସିଂହ ନିଜର ସ୍ନେହାସ୍ପଦ ସାନଭାଇ କୁଲ୍‌ତାର ସିଂହଙ୍କ ନିକଟକୁ ଯେଉଁ ଶେଷ ପତ୍ର ଖଣ୍ଡି ଲେଖିଥିଲେ, ତାହା ଅତ୍ୟନ୍ତ ଭାବୋଦ୍ଦୀପକ ଓ ମର୍ମସ୍ପର୍ଶୀ । ସେଥିରେ ସେ ଲେଖିଥିଲେ, "ସୂର୍ଯ୍ୟୋଦୟ ହେବା ସମୟରେ ନିୟତିର ପଥକୁ ଅବରୁଦ୍ଧ କରିବାର ଶକ୍ତି

କାହାର ଅଛୁ ? ଯଦି ସାରା ସଂସାର ଆମର ବିରୋଧ ହୁଅନ୍ତି, ତେବେ ସୁଦ୍ଧ କୌଣସି କଥାକୁ ଚିନ୍ତା ନାହିଁ । ଭାଇ, ମୋ ଜୀବନର ଅନ୍ତିମ ସମୟ ଆସି ଉପଗତ ହେଲାଣି । ଯେଉଁ ହେଲାଷଣି ଦୀପଶିଖା ଯେପରି ଅଦୃଶ୍ୟ ହୋଇଯାଏ, ସେହିପରି ଉଷାକାଳ ଉପଗତ ହେଉଁ ହେଉଁ ମୁଁ ବିଲୀନ ହୋଇଯିବି । ଆମର ଆତ୍ମା ତଥା ଆମର ବିଶ୍ୱର ବିଜୁଳିର ଏକ ଗର୍ଜନପରି ଚମକ ସୃଷ୍ଟି କରି ସମଗ୍ର ବିଶ୍ୱକୁ ଆଲୋକିତ କରିଦେବ । ମୁଠିଏ ଧୂଳି ଯଦି ଧୂଳି ମିଶିଯାଏ, ତେବେ ସେଥିରେ ଚିନ୍ତା କ'ଣ ?"

## ବ୍ୟକ୍ତିତ୍ୱ

ସର୍ଦ୍ଦାର ଭଗତ୍ ସିଂହ ଜଣେ ସ୍ୱାସ୍ଥ୍ୟବାନ ଏବଂ ସୁଶ୍ରୀ ଯୁବକ ଥିଲେ । ତାଙ୍କର ଉଚ୍ଚତା ଥିଲା ପାଞ୍ଚଫୁଟ ଦଶଇଞ୍ଚ । ତାଙ୍କର କଣ୍ଠସ୍ୱର ଅତି ମଧୁର ଥିଲା ଏବଂ ସେ ଭାବବ୍ୟଞ୍ଜକ ସ୍ୱରରେ ଗୀତ ଗାଇପାରୁଥିଲେ । ଏସେମ୍ବ୍ଲି ବୋମାକାଣ୍ଡ ମାମଲାରେ ଅଭିଯୁକ୍ତ ହୋଇ କାରାଦଣ୍ଡ ଭୋଗ କରିବା ସମୟରେ ଦିନେ ତାଙ୍କ ଔକିଲ ଶ୍ରୀ ଆସଫଅଲ୍ଲୀ ତାଙ୍କ ସହିତ ସାକ୍ଷାତ କରିବା ପାଇଁ ସପତ୍ନୀକ ଜେଲରେ ପହଞ୍ଚିଲେ । ସେତେବେଳେ ଭଗତ ସିଂହଙ୍କୁ ଗୋଟିଏ କୋଠରୀରେ ବନ୍ଦକରି ରଖାଯାଇଥିଲା ଏବଂ ତାଙ୍କ ହାତରେ ହାତକଡ଼ି ପଡ଼ିଥିଲା । ଆସଫ୍ ଅଲ୍ଲୀ ଯେତେବେଳେ ସେ କୋଠରୀ ପାଖରେ ପହଞ୍ଚିଗଲେ, ସେତେବେଳେ ଏକ ସୁଲଳିତ ସଙ୍ଗୀତର ମଧୁର ମୂର୍ଚ୍ଛନା କର୍ଣ୍ଣ ତାଙ୍କ ଗୋଚର ହେଲା । ସଙ୍ଗୀତଟି କୌଣସି ଲୌହ ଝଙ୍କାରର ତାଳେ ତାଳେ କୋଠରୀକୁ ମୁଖରିତ କରୁଥିଲା । ଏହା ଶୁଣି ଆସଫ୍ ଅଲ୍ଲୀ ଟିକିଏ ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ । ଲକ୍ଷାରେ ହରିଶଦ ଭଳି ଜେଲ୍ ପ୍ରକୋଷ୍ଠରେ ସଙ୍ଗୀତ ମୂର୍ଚ୍ଛନା ବାସ୍ତବରେ ତାଙ୍କୁ ବିସ୍ମୟବିଭୋର କରି ପକାଇଥିଲା । ସେ ଆଉ ଦୁଇପଦ ଆଗେଇଯାଇ ସ୍ୱୟଂ ଭଗତ ସିଂହଙ୍କୁ ଜଣେ ସରଳ ବାଳକ ଭଳି ନିର୍ବିକାର ଚିତ୍ତରେ ନିଜ ହାତରେ ଲାଗିଥିବା ଲୁହା ହାତକଡ଼ିରେ ତାଳ ପକାଇ ଗୀତ ଗାଇ ବୁଲୁଥିବାର ଦେଖିଲେ ।

ଭଗତ ସିଂହଙ୍କ ହୃଦୟ ସଦ୍‌ଭାବ ଏବଂ ସହାନୁଭୂତିରେ ପୂର୍ଣ୍ଣ ଥିଲା । ଉପନ୍ୟାସ ପାଠ କଲା ସମୟରେ ସେ ସେଥିରେ ଥିବା ଦୁଃଖ ଓ ହତଭାଗ୍ୟ କାଳ୍ପନିକ ଚରିତ୍ରଗୁଡ଼ିକ ପାଇଁ ମଧ୍ୟ ହୃଦୟରେ ବ୍ୟଥା ଅନୁଭବ କରୁଥିଲେ । ସ୍ପେସାଲ ମାଜିଷ୍ଟ୍ରେଟ୍‌ଙ୍କ ଅଦାଲତରେ ସେ ଲିଓନାର୍ଡ଼ ଏଣ୍ଡ୍ରିଓଙ୍କ ଲିଖିତ 'ଫାଶୀ ଦିଆଯାଇଥିବା ସାତଜଣ ବ୍ୟକ୍ତି' ନାମକ ଉପନ୍ୟାସଟିକୁ ଖୁବ୍ ଜୋର୍‌ରେ ପଢ଼ି ସେଠାରେ ଉପସ୍ଥିତ ଲୋକମାନଙ୍କୁ ଶୁଣାଉଥିଲେ । ଉପନ୍ୟାସ ବର୍ଣ୍ଣିତ ଏହି ସାତଜଣ ବ୍ୟକ୍ତି ମଧ୍ୟରେ ଜଣେ ଥିଲେ ଅତ୍ୟନ୍ତ ଭୟାକ୍ରାନ୍ତ । ଫାଶୀ କଥା କଳ୍ପନା କଲା ମାତ୍ରକେ ତାଙ୍କ ଦେହରେ ଶିହରଣ ଖେଳି ଯାଉଥିଲା । କିନ୍ତୁ ତାଙ୍କୁ ମଧ୍ୟ ଶେଷରେ ଫାଶୀ ଖୁଣ୍ଟରେ ପ୍ରାଣଦେବାକୁ ପଡ଼ିଥିଲା । ସେହି ବ୍ୟକ୍ତିର ଅନ୍ତିମକାଳ ବର୍ଣ୍ଣନାକୁ ପାଠ କରିବା ସମୟରେ ଭଗତ ସିଂହଙ୍କ ଆଖି ଲୁହରେ ଛଳ ଛଳ ହୋଇ ଉଠୁଥିଲା ।

ଭଗତ ସିଂହ ଜଣେ ଅଧ୍ୟୟନପ୍ରିୟ ଅଧ୍ୟବସାୟୀ ଯୁବକ ଥିଲେ । ତାଙ୍କର ଅତି ପ୍ରିୟ ବିଷୟ ଥିଲା ସମାଜବାଦ । ଏହି ସମାଜବାଦ ଉପରେ ସେ ବହୁ ପୁସ୍ତକ ଅଧ୍ୟୟନ କରିଥିଲେ । ଲାହୋର ଷଡ଼ଯନ୍ତ୍ର ମାମଲାରେ ଯେଉଁ ଯୁବକମାନେ ଅଂଶ ଗ୍ରହଣ କରିଥିଲେ ସେମାନେ ସମସ୍ତେ ବୌଦ୍ଧିକ ଚେତନା ସମ୍ପନ୍ନ ଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ସର୍ବାଧିକ ବିଦ୍ୱାନ୍ ଥିଲେ ସର୍ଦ୍ଦାର ଭଗତ୍ ସିଂହ । ସମାଜବାଦ ତାଙ୍କ ଅଧ୍ୟୟନର ମୁଖ୍ୟ ବିଷୟବସ୍ତୁ ହୋଇଥିବାରୁ ସେ ଊନବିଂଶ ଶତାବ୍ଦୀରେ ୧୯୧୭ ମସିହା ଅକ୍ଟୋବର ବିପ୍ଳବ ମଧ୍ୟରେ ପ୍ରକାଶିତ ରୁଷିଆର ସମସ୍ତ ବିପ୍ଳବାତ୍ମକ ପୁସ୍ତକ ସଂଗ୍ରହ କରି ସେଗୁଡ଼ିକୁ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ସମାଜବାଦ ଉପରେ ଭଗତ ସିଂହଙ୍କର ଯେପରି ବ୍ୟାପକ ତଥା ଗଭୀର ଅଧ୍ୟୟନ ଥିଲା, ସେପରି ଅଧ୍ୟୟନ ତାଙ୍କ ସମସାମୟିକ କୌଣସି ଭାରତୀୟଙ୍କର ନ ଥିଲା । ବୋଲ୍‌ଶେଭିକ୍ ଶାସନକାଳରେ ରୁଷିଆରେ ଯେଉଁ ପ୍ରକାର ଅର୍ଥନୀତି ପ୍ରୟୋଗ କରାଯାଇଥିଲା, ସେ ସମ୍ବନ୍ଧରେ ମଧ୍ୟ ତାଙ୍କର ଚମତ୍କାର ଧାରଣା ଥିଲା ।

ରାଜନୈତିକ ଏବଂ ଆର୍ଥିକ ସମସ୍ୟା ଉପରେ ଆଧାରିତ ଉପନ୍ୟାସ ଗୁଡ଼ିକ ମଧ୍ୟ ତାଙ୍କର ସୁଖପାଠ୍ୟ ଥିଲା । ଯେଉଁ ଉପନ୍ୟାସରେ ମାନବର ନିକୃଷ୍ଟ ପ୍ରବୃତ୍ତିଗୁଡ଼ିକର ଚିତ୍ରଣ କରାଯାଇ ଥାଏ, ସେ ପ୍ରକାର ଉପନ୍ୟାସକୁ ସେ ଅତ୍ୟନ୍ତ ଘୃଣା କରୁଥିଲେ । ଜେଲରେ ଥିବା ସମୟରେ ସେ ପ୍ରଥମେ ବଶିଷ୍ଟ ପାଶ୍ଚାତ୍ୟ ଔପନ୍ୟାସିକ ଚାର୍ଲସ୍ ଡିକେନ୍‌ସଙ୍କ ଲିଖିତ ପୁସ୍ତକଗୁଡ଼ିକୁ ପଢ଼ିବାକୁ ଲାଗିଲେ । ସେ ପୁସ୍ତକଗୁଡ଼ିକ ତାଙ୍କର ଅତି ପ୍ରିୟ ଥିଲା । ଏହା ବ୍ୟତୀତ ଆପଟନ୍ ସିଂକ୍ଲେୟାର୍‌ଙ୍କ 'ବୋଷ୍ଟନ' 'ଜଙ୍ଗଲ' ଓ 'ଅଏଲ' ପ୍ରଭୃତି ପୁସ୍ତକଗୁଡ଼ିକ ସେ ଅତି ଆଗ୍ରହର ସହିତ ପାଠ କରିଥିଲେ । ଏହି ଲେଖକଙ୍କର 'ଡାୟଏଟର୍ ଜଷ୍ଟିସ' ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ତାଙ୍କର ଅତି ପ୍ରିୟ ଥିଲା । ହାଲକେନଙ୍କର 'ଇଟାର୍ନାଲ ସିଟୀ' ପୁସ୍ତକଟିକୁ ପଢ଼ିବା ସମୟରେ ସେ ରେମିଲେଙ୍କ ଭାଷଣର କିୟଦଂଶ କଣ୍ଠସ୍ଥ କରି ପକାଇଥିଲେ । ଏହାଛଡ଼ା ମେକ୍‌ସିମ ଗର୍କୀଙ୍କ "ମଦର" ଏବଂ ଷ୍ଟେପନାୟକଙ୍କ 'କେରିଥାର ଅଫ ଏ ନିହିଲିଷ୍ଟ' ପୁସ୍ତକଦ୍ୱୟ ତାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ଆସ୍କର୍ ଓ୍ୱାଇଲ୍‌ଡ଼ଙ୍କ 'ମାର୍ଚ୍ଚ ଫାଇଟ ଫର ଆୟରିଶ ଫ୍ରିଡ଼ମ' ପୁସ୍ତକ ଖଣ୍ଡି ଭଗତ୍ ସିଂହଙ୍କର ସବୁଠାରୁ ଅଧିକ ପ୍ରିୟ ଥିଲା ।

ସର୍ଦ୍ଦାର ଭଗତ ସିଂହ ଯେଉଁ ଦିନଠାରୁ କମ୍ୟୁନିଷ୍ଟ ସାହିତ୍ୟ ପଢ଼ିବା ଆରମ୍ଭ କଲେ, ସେହିଦିନଠାରୁ ସେ ନିଜକୁ କମ୍ୟୁନିଷ୍ଟ ମତବାଦ ଅନୁସାରେ ଗଢ଼ିବାକୁ ଲାଗିଲେ । ପ୍ରସିଦ୍ଧ ରୁଷନେତା ଜୋପଟକିନଙ୍କ ସ୍ମୃତି ତାଙ୍କ ଜୀବନ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ଏହା ଛଡ଼ା ମାଇକେଲ ବାକୁନିନ ତାଙ୍କ ସମଗ୍ର ଜୀବନ ଧାରାକୁ ବଦଳାଇ ଦେଇଥିଲେ । ଈଶ୍ୱର-ବିଶ୍ୱାସ କମ୍ୟୁନିଷ୍ଟ ମତବାଦର ବିରୁଦ୍ଧ ଥିବାରୁ ଭଗତ୍ ସିଂହ ତାଙ୍କ ମନରୁ ସମସ୍ତ ଈଶ୍ୱର ବିଶ୍ୱାସ ପୋଛି ପକାଇବାକୁ ଉଦ୍ୟମ କରିଥିଲେ । ବାହାରେ ସେ ନିଜକୁ ସର୍ବଦା ନିରୀଶ୍ୱରବାଦୀ ହିସାବରେ ପରିଚୟ ଦେଉଥିଲେ ମଧ୍ୟ ଅନ୍ତର ମଧ୍ୟରେ ତାଙ୍କର ଈଶ୍ୱରବିଶ୍ୱାସ ଥିଲା କି ନାହିଁ ତାହା ଜାଣିବା ଅବଶ୍ୟ କଠିନ ବ୍ୟାପାର । ୧୯୨୬ ମସିହା 'ଏକଦଶହରା ବୋମାକାଣ୍ଡ'ରେ

ପୁଲିସ ତାଙ୍କୁ ଗିରଫ କରି ପ୍ରକୃତ ତଥ୍ୟ ଆଦାୟ କରିବା ପାଇଁ ବହୁ ଯନ୍ତ୍ରଣା ଦେଇଥିଲେ । ସେ ଏସମୟରେ ତାଙ୍କ ନିର୍ଭୀକ ବାଧୀଚାର କଠୋର ପରୀକ୍ଷା ହୋଇଥିଲା ।

ଭଗତ ସିଂହ ବିପ୍ଳବୀ ଥିଲେ ସତ, କିନ୍ତୁ ସେ କେବେହେଁ ସନ୍ତ୍ରାସବାଦୀ ନ ଥିଲେ । କାକୋରୀ ଷଡ଼ଯନ୍ତ୍ର ମାମଲାରେ କେତେଜଣ ବିପ୍ଳବୀଙ୍କୁ ଫାଶୀଦଣ୍ଡ ଦିଆଯିବା ପରେ ଦେଶରେ ଅନ୍ୟାନ୍ୟ ବିପ୍ଳବୀଯୁବକମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ଦେଖାଯାଇଥିଲା । ଭଗତ୍ ସିଂହ ଏହି ପ୍ରତିକ୍ରିୟାଶୀଳ ଯୁବକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ସେ ସମୟରେ ସେ ସନ୍ତ୍ରାସବାଦୀମାନଙ୍କ ସହିତ ଯୋଗ ଦେଇଥିଲେ ମଧ୍ୟ ବିଭିନ୍ନ ଆତଙ୍କବାଦୀ କାର୍ଯ୍ୟରୁ ବିରତ ରହିଥିଲେ । ବ୍ୟକ୍ତିଗତ ବିପ୍ଳବ ଓ ଆତଙ୍କବାଦ ଅପେକ୍ଷା ସେ ଜନ ସାଧାରଣଙ୍କ ମୁକ୍ତି ଓ ଉନ୍ନତି ପାଇଁ ସାମୂହିକ ବିପ୍ଳବକୁ ଅଧିକ ପସନ୍ଦ କରୁଥିଲେ । ଭାରତୀୟ କଂଗ୍ରେସ ଉପରେ ତାଙ୍କର ଆସ୍ଥା ନ ଥିଲା । ଏହାର ଅଧିକାଂଶ ସଭ୍ୟ ଜମିଦାର, ପୁଞ୍ଜିପତି ତଥା ଧନଶାଳୀ ବୁଦ୍ଧିଜୀବୀ ହୋଇଥିବାରୁ ଦେଶର ଜନସାଧାରଣଙ୍କୁ ପୂର୍ଣ୍ଣ ଆର୍ଥିକ ସ୍ୱାଧୀନତା ଦେବାଭଳି ଆନ୍ଦୋଳନ ଚଳାଇବା ଏହା ପକ୍ଷରେ ଏକାନ୍ତ ଅସମ୍ଭବ ଥିଲା । ଗାନ୍ଧିଜୀଙ୍କ ସମ୍ବନ୍ଧରେ ତାଙ୍କର ଧାରଣା ଭିନ୍ନ ଥିଲା । ତାଙ୍କ ମତରେ ଗାନ୍ଧିଜୀ ଜଣେ ଦୟାଳୁ, ମାନବତାବାଦୀ ବ୍ୟକ୍ତି ହୋଇଥିଲେ ମଧ୍ୟ ତାଙ୍କର ଦୃଷ୍ଟିଭଙ୍ଗୀ ଏବଂ ଆଦର୍ଶ ପ୍ରଗତିଶୀଳ ନ ଥିଲା । ସର୍ଦ୍ଦାର ଭଗତ ସିଂହ ଥିଲେ ପ୍ରଗତିବାଦୀ ଆଦର୍ଶର ପୂଜାରୀ । ତେଣୁ ସମାଜରେ ଏକ ଆନ୍ଦୋଳନାତ୍ମକ ପରିବର୍ତ୍ତନ ଆଣିବା ନିମିତ୍ତ ସମସ୍ତ ପ୍ରକାର କାର୍ଯ୍ୟପାଇଁ ପ୍ରସ୍ତୁତ ଥିବା ଯୁବକମାନଙ୍କୁ ସେ ସର୍ବଦା ସ୍ୱାଗତ ଜଣାଉଥିଲେ ।

ତାଙ୍କ ମତରେ ଏହି ଆଦର୍ଶ ରକ୍ଷା କରିବା ପାଇଁ ଯୁବକମାନଙ୍କର କେବଳ ସଭା ମଞ୍ଚ ଉପରୁ ଜ୍ୱାଳାମୟୀ ଭାଷଣ ଦେଲେ ଚଳିବ ନାହିଁ; ବରଂ ଏଥି ନିମିତ୍ତ ସେମାନଙ୍କୁ ଫାଶୀଖୁଣ୍ଟରେ ଝୁଲିବା ପାଇଁ ମଧ୍ୟ ଅଦମ୍ୟ ସାହସ

ଓ ମନୋବଳ ସୃଷ୍ଟି କରିବାକୁ ପଡ଼ିବ । ଏସେମ୍ବ୍ଲିବୋମା କାଣ୍ଡରେ ସର୍ଦ୍ଦାର ଭଗତ୍ ସିଂହ ଯେଉଁ ଭାଷଣ ଦେଇଥିଲେ, ଜନସାଧାରଣଙ୍କ ଉପରେ ତାର ଯଥେଷ୍ଟ ପ୍ରଭାବ ପଡ଼ିଥିଲା । ଏହାର ଫଳ ସ୍ୱରୂପ 'ଦେଶର ସହସ୍ର ସହସ୍ର ଯୁବକ ଯୁବତୀ ବିପ୍ଳବାଗ୍ନିରେ ଝାସ ଦେବା ନିମିତ୍ତ ଆଗେଇ ଆସିଥିଲେ ।

ଜେଲରେ, ଏପରିକ ଫାଶୀ ଘର ମଧ୍ୟରେ ସୁଦ୍ଧା ଭଗତ୍ ସିଂହ କେବଳ ଲେଖା ପଢ଼ାରେ ସମସ୍ତ ଅତିବାହିତ କରୁଥିଲେ । ଯେଉଁ ଭାରତୀୟ-ମାନେ କୌଣସି ଏକ ଆଦର୍ଶ ପାଇଁ ଫାଶୀକାଠରେ ପ୍ରାଣବଳୀ ଦେଇଥିଲେ, ସେ ସେମାନଙ୍କର ଏକ ହିସାବ ରଖୁଥିଲେ । ସେହି ହିସାବ ଖାତାରେ ପ୍ରତ୍ୟେକ ଶହୀଦଙ୍କ ସଂକ୍ଷିପ୍ତ ଜୀବନୀ ସହିତ ଗୋଟିଏ ଲେଖାଏଁ ପ୍ରେରଣା ଦାୟକ ବାକ୍ୟ ସନ୍ନିବେଷ୍ଟ ଥିଲା । ଜେଲ ମଧ୍ୟରେ ଥାଇ ନିଜର ସ୍ମୃତିରୁ ସେ ସେ ଟିପ୍ପଣୀ ଲେଖୁଥିଲେ । ଏହା ପାଠ କଲେ ଜଣାଯାଏ ଯେ, ତାଙ୍କର ଅଧ୍ୟୟନ ଅତି ବ୍ୟାପକ ଥିଲା ଏବଂ ସ୍ମରଣଶକ୍ତି ଅତି ପ୍ରଖର ଥିଲା । କୌଣସି ପୁସ୍ତକ ପାଠ କରିବା ସମୟରେ ସେଥିରେ ଥିବା ପ୍ରେରଣାଦାୟକ ବାକ୍ୟ ଏବଂ ସାହିତ୍ୟିକ ଭାବଗୁଡ଼ିକୁ ସେ କଣ୍ଠସ୍ଥ କରି ପକାଉଥିଲେ ।

ଜେଲରେ ଥିଲା ସମୟରେ ସେ ତାଙ୍କ ବିପ୍ଳବୀ ପୁସ୍ତକର ପ୍ରଥମ ଭାଗଟିକୁ ପୁସ୍ତିକା ଆକାରରେ ଲେଖିଥିଲେ । 'ହିନ୍ଦୁସ୍ଥାନ ରିପବ୍ଲିକାନ ଏସୋସିଏସନ' ଏହାକୁ ୧୯୨୫ ମସୀହାରେ ଛପାଇଥିଲେ । ସେହି ଜେଲ ମଧ୍ୟରେ ବହୁ ପରିଶ୍ରମ କରି ସେ ଭାରତରେ ବିପ୍ଳବୀ ଆନ୍ଦୋଳନର ବିସ୍ତୃତ ଇତିହାସ ଉପରେ ତାଙ୍କର ଅନ୍ୟ ଏକ ପୁସ୍ତକ ରଚନା କରିଥିଲେ । ଏଥିପାଇଁ ସେ ଜେଲ ମଧ୍ୟକୁ ଲୁକ୍କାୟିତ ଭାବରେ ବହୁ ଦୁର୍ଲଭ ପୁସ୍ତକ ମଗାଇ ନେଇଥିଲେ । ଏହି ପୁସ୍ତକର କଳେବର ଖୁବ ବଡ଼ ଥିଲା । ଏହା ପାଠକଲେ ଭଗତ୍ ସିଂହଙ୍କ ଗଭୀର ଅଧ୍ୟୟନ ବିଷୟରେ ଏକ ସ୍ପଷ୍ଟ ଧାରଣା ଜାତହୁଏ । ବଙ୍ଗଳାର ବିପ୍ଳବୀ ଇତିହାସ ଜାଣିବା ପାଇଁ ସେ ବଙ୍ଗଳା ଶିକ୍ଷା କରିଥିଲେ ଏବଂ ତତ୍ ସମ୍ପର୍କୀୟ ବହୁ ବଙ୍ଗଳା ପୁସ୍ତକ ଅଧ୍ୟୟନ

କରିଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ, ଭଗତ ସିଂହଙ୍କ ଦ୍ୱାରା ଲିଖିତ ଏହି ଉପାଦେୟ ପୁସ୍ତକର ପାଣ୍ଡୁଲିପି ଖଣ୍ଡି ଏବେ ମଧ୍ୟ ମିଳୁନାହିଁ । ହୁଏତ ତାଙ୍କ ମୃତ୍ୟୁ ପରେ ଇଂରେଜ ସରକାର ପାଣ୍ଡୁଲିପିଟିକୁ ନଷ୍ଟ କରି ଦେଇଛନ୍ତି ।

୧୯୨୯ ମସିହାରେ ଲାହୋର୍‌ରେ ହୋଇଥିବା 'ଯୁଥ୍‌ଲିଗ୍'ର ଏକ ଅଧିବେଶନ ପାଇଁ ସର୍ଦ୍ଦାର ଭଗତ୍ ସିଂହ କାରାଗାରର ଫାଶୀ ଗୃହ ଭିତରୁ ମଧ୍ୟ ଗୁପ୍ତରେ ତାଙ୍କର ସନ୍ଦେଶ ଓ ଶୁଭେଚ୍ଛା ପ୍ରେରଣ କରିଥିଲେ । କେବଳ ଏତିକି ନୁହେଁ, ସମସ୍ତ ସମୟରେ ସେ ଜେଲ ପ୍ରକୋଷ୍ଠ ମଧ୍ୟରୁ ପ୍ରଚ୍ଛନ୍ନ ପତ୍ର ପାଇଁ ବହୁଲେଖା ଗୋପନରେ ବାହାରକୁ ପଠାଇ ଦେଉଥିଲେ । ଏହି ଲେଖାଗୁଡ଼ିକ ମଧ୍ୟରେ 'ଫିଲୋସଫି ଅଫ୍ ଦ ବମ୍' ଶୀର୍ଷକ ଲେଖାଟି ବିଶେଷ ଉଲ୍ଲେଖ ଯୋଗ୍ୟ । ଫାଶୀଦଣ୍ଡ ପାଇବାର କିଛିଦିନ ପୂର୍ବରୁ ସେ ଭାରତର ଯୁବ-ରାଜନୈତିକ କର୍ମକର୍ତ୍ତାମାନଙ୍କ ଉଦ୍ଦେଶ୍ୟରେ ତାଙ୍କର ଏକ ବକ୍ତବ୍ୟ ଲେଖି ଗୋପନରେ ଜେଲ୍ ବାହାରକୁ ପଠାଇ ଦେଇଥିଲେ । ଏହାହିଁ ସମ୍ଭବତଃ ଦେଶପାଇଁ ଭଗତ୍ ସିଂହଙ୍କର ଅନ୍ତିମବାର୍ତ୍ତା ଥିଲା ।

ସମାଜବାଦ ସମ୍ବନ୍ଧରେ ଭଗତ୍ ସିଂହଙ୍କର ଦୃଷ୍ଟିକୋଣ ବ୍ୟାପକ ଥିଲା । ସେ କେବଳ ଦେଶର ଗୋଟିଏ ସ୍ଥାନରେ ସମାଜବାଦ ପ୍ରତିଷ୍ଠା କରିବାକୁ ଚାହୁଁ ନ ଥିଲେ । ଦେଶର ପ୍ରତ୍ୟେକ ସ୍ଥାନରେ ଏହାର ପ୍ରସାର ଘଟାଇବା ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ସଙ୍କୀର୍ଣ୍ଣ ସ୍ୱାଦେଶିକତା ବିରୁଦ୍ଧରେ ସେ ପ୍ରାଣ ପଣେ ଲଢ଼େଇ କରୁଥିଲେ ।

ସେ ସର୍ବଦା ଆଶାବାଦୀ ଥିଲେ । ଜୀବନର ଲକ୍ଷ୍ୟ ହାସଲ କରିବା ପାଇଁ ସେ ଶତବାଧା ବିପତ୍ତିକୁ ମଧ୍ୟ ଭ୍ରୂକ୍ଷେପ କରୁ ନ ଥିଲେ । ଗିରଫ ହେଲା ଦିନଠାରୁ ମାର୍ଚ୍ଚ ୨୩ ତାରିଖ ସକାଳ ପର୍ଯ୍ୟନ୍ତ ଥିଲା ତାଙ୍କ ଅନ୍ତିମ ଯାତ୍ରାର ପ୍ରସ୍ତୁତି ସମୟ । ଏହି ସମୟ ମଧ୍ୟରେ ସେ କେବେହେଲେ ନିରାଶା ପ୍ରକାଶ କରିନାହାନ୍ତି । ତାହାଙ୍କୁ ଜେଲରୁ ମୁକ୍ତ କରିବା ପାଇଁ ଏବଂ ମୃତ୍ୟୁ ଦଣ୍ଡରୁ ରକ୍ଷା କରିବା ପାଇଁ ତାଙ୍କର ସାଥୀ ଓ ବନ୍ଧୁ ପରିଜନମାନେ ଯେତେବେଳେ ଇଂରେଜ ସରକାରଙ୍କ ପାଖରେ ଆବେଦନ କରିବାକୁ ଚାହିଁଲେ, ସେତେ-ବେଳେ ସେ ସେମାନଙ୍କୁ ଏ କାର୍ଯ୍ୟରୁ ବିରତ ହେବାକୁ ଅନୁରୋଧ

କରିଥିଲେ । ବରଂ ସେ ସରକାରଙ୍କୁ ସିଧାସିଧି ଭାବରେ ଜଣାଇ ଦେଲେ ଯେ, ଯଦି ସରକାର ତାଙ୍କୁ ଦେଶର ଜଣେ ସ୍ୱାଧୀନତା କାମୀ ଯୁବକ ହିସାବରେ ଗ୍ରହଣ କରିଥାʼନ୍ତି, ତେବେ ତାଙ୍କୁ ଗୋଟିଏ ପରାଧୀନ ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ କରିବାକୁ ଗ୍ରହଣ କରିଥାନ୍ତି; ତାହା ନ ହେଲେ ଯଦି ସରକାର ତାଙ୍କୁ ଏବଂ ତାଙ୍କର ସାଥୀମାନଙ୍କୁ ଶତ୍ରୁ ମନେକରି ସେମାନଙ୍କ ସହିତ ଯୁଦ୍ଧ କରୁଥାʼନ୍ତି, ତେବେ ତାଙ୍କୁ ମୃତ୍ୟୁଦଣ୍ଡ ଦେଲେ ତାଙ୍କର ଦୁଃଖ ନାହିଁ । ଏ ପ୍ରକାର ମନୋଭାବ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସର୍ଦ୍ଦାର ଭଗତ୍ ସିଂହ ସରକାରଙ୍କୁ ଆଉ ଏକ ଅନୁରୋଧ ଜଣାଇ କହିଥିଲେ ଯେ, ଯୁଦ୍ଧବନ୍ଦୀମାନଙ୍କ ପରି ଇଂରେଜ ସୈନ୍ୟମାନଙ୍କ ବନ୍ଧୁକରୁ ଗୁଳିବର୍ଷଣ କରି ତାଙ୍କୁ ହତ୍ୟା କରାଯାଉ; କିନ୍ତୁ ଜଣେ ନିକୃଷ୍ଟ ଅପରାଧୀ ଭଳି ଯେପରି ତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆ ନ ଯାଉ । ପଞ୍ଜାବର ତତ୍କାଳୀନ ଗଭର୍ଣ୍ଣରଙ୍କ ପାଖକୁ ଭଗତ୍ ସିଂହ ଏହି ମର୍ମରେ ଯେଉଁ ପତ୍ର ଲେଖିଥିଲେ ତାର କିୟଦଂଶ ନିମ୍ନରେ ଉଦ୍ଧାର କରାଗଲା—

"ମାନ୍ୟବର ଗଭର୍ଣ୍ଣର୍, ପଞ୍ଜାବ୍,                    ମହୋଦୟ,

ଯଥୋଚିତ ସମ୍ମାନ ସହ ଆମେ ନିମ୍ନୋକ୍ତ ତଥ୍ୟ ଆପଣଙ୍କ ସମ୍ମୁଖରେ ଉପସ୍ଥାପନ କରିବାକୁ ଚାହୁଁଅଛୁଁ ।

ଭାରତରେ ବ୍ରିଟିଶ ସରକାର୍‌ର ବଡ଼ଲାଟ୍ ମହୋଦୟଙ୍କ ଦ୍ୱାରା ଜାରି କରାଯାଇଥିବା ସ୍ୱତନ୍ତ୍ର ଏସ୍. ସି, ସି, ଅନୁସାରେ ଗଠିତ ବିଶେଷ ଅଦାଲତ୍ ଦ୍ୱାରା ୧୯୩୦ ମସିହା ଡିସେମ୍ବର ମାସ ୭ ତାରିଖ ଦିନ ଆମକୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରାଯାଇଛି । ଆମେ ଇଂଲଣ୍ଡର ଶାସକ ସମ୍ରାଟ ଜର୍ଜଙ୍କ ବିରୁଦ୍ଧରେ ଯୁଦ୍ଧ ପରିଚାଳନା କରୁଛୁଁ ବୋଲି ଆମପ୍ରତି ଦୋଷାରୋପ କରାଯାଇଛି ।

ଅଦାଲତ୍ ତାଙ୍କ ରାୟରେ ଦୁଇଟି ବିଷୟକୁ ପ୍ରଥମରୁହିଁ ସ୍ୱୀକାର କରି ନେଇଛନ୍ତି । ପ୍ରଥମ ବିଷୟଟି ହେଉଛି ଭାରତ ଓ ଇଂଲଣ୍ଡ ମଧ୍ୟରେ ଯୁଦ୍ଧ ସଂଘଟିତ ହୋଇଛି ଏବଂ ଦ୍ୱିତୀୟ ବିଷୟଟି ହେଉଛି, ଆମେ ବସ୍ତୁତଃ ଏ ଯୁଦ୍ଧରେ ଅଂଶ ଗ୍ରହଣ କରିଛୁଁ ଓ ସେଥିପାଇଁ ଆମେ ବର୍ତ୍ତମାନ ଯୁଦ୍ଧ-ବନ୍ଦୀ ହିସାବରେ ରହିଛୁ । ...    ...    ଯେତେବେଳେ ଆମ ଭାଗ୍ୟର ପ୍ରଶ୍ନ

ଉଠୁଛି, ଆମେ ଆପଣଙ୍କ ଅନୁମତି ଭିକ୍ଷା କରି କହିବାକୁ ଚାହୁଁଛୁ ଯେ, ଯେତେବେଳେ ଆପଣ ଆମକୁ ମୃତ୍ୟୁ-ଦଣ୍ଡରେ ଦଣ୍ଡିତ କରିବାକୁ ନିଶ୍ଚିତ କରି ସାରିଛନ୍ତି, ଆପଣ ତାହାହିଁ କରିବେ । ଆପଣଙ୍କ ହାତରେ ଶକ୍ତି ରହିଛି ଏବଂ ପୃଥିବୀରେ ଶକ୍ତିହିଁ ସବୁଠାରୁ ବଡ଼ ସତ୍ୟ । ଆପଣ ମାନଙ୍କର 'ଜୋର୍ ଯାହାର, ମୁଲ୍କ ତାହାର' ନୀତିହିଁ .ଆପଣଙ୍କ କର୍ମ ପନ୍ଥାର ପରିଚୟ ମିଳୁଛି । ଆମର ସମସ୍ତ ଅଭିଯୋଗହିଁ ତାହାର ପ୍ରମାଣ । ଆମେ ଏଠାରେ କହିବାକୁ ଚାହୁଁ ଯେ, ଆପଣଙ୍କ ନ୍ୟାୟାଳୟର ବକ୍ତବ୍ୟ ଅନୁସାରେ ଆମେ ଏକ ଯୁଦ୍ଧ ପରିଚାଳନା କରୁଥିଲୁଁ ଏବଂ ସେଥିପାଇଁ ଆମେ ଯୁଦ୍ଧ-ବନ୍ଦୀ ଅଟୁଁ । ସୁତରାଂ ଆମ ପ୍ରତି ତଦନୁରୂପ ବ୍ୟବହାର ପ୍ରଦର୍ଶିତ ହେଉ । ଅର୍ଥାତ୍ ଆମେ ଚାହୁଁଛୁ ଯେ, ଆମକୁ ଫାଶୀ ଖୁଣ୍ଟରେ ଝୁଲାଇବା ପରିବର୍ତ୍ତେ ଗୁଳିକରି ମାରି ଦିଆଯାଉ । ଆପଣଙ୍କର ନ୍ୟାୟାଳୟ ଯାହା କହିଛନ୍ତି ପ୍ରକୃତରେ ଆପଣ ସେଇଆ ଚାହୁଁଛନ୍ତି କି ନାହିଁ ଏହା ନିରୂପଣ କରିବା ଆପଣଙ୍କର କାର୍ଯ୍ୟ । ଆମେ ପ୍ରାର୍ଥନା ତଥା ଆଶା କରୁଛୁଁ ଯେ, ଆପଣ ଦୟା ପରବଶ ହୋଇ ଆମର ବଧ ସମାପନ କରିବା ନିମିତ୍ତ ସୈନ୍ୟ ବିଭାଗକୁ ନିର୍ଦ୍ଦେଶ ଦେବେ ।

ଆପଣଙ୍କର ଭଗତ୍ ସିଂହ ।"

ଆମ ଦେଶର ବହୁ ଯୁବକ ପ୍ରାଣୋତ୍ସର୍ଗ କରି ଶହୀଦ ହୋଇଛନ୍ତି । କିନ୍ତୁ ଶହୀଦ୍ ହିସାବରେ ସର୍ଦ୍ଦାର ଭଗତ୍ ସିଂହ ଭାରତ ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ବାର୍ଷ ବୃଇବର୍ଷ ସମୟର ଉତ୍ଥାନ ପତନ ମଧ୍ୟରେ ଭଗତ୍ ସିଂହଙ୍କ ପରି କୌଣସି ଶହୀଦ ପ୍ରତି ମୁହୂର୍ତ୍ତରେ ଚରମ ଉତ୍ସାହର ସହିତ କାର୍ଯ୍ୟ କରିବାର ଏ ପର୍ଯ୍ୟନ୍ତ ଦେଖାଯାଇ ନାହାନ୍ତି । ଯୌବନ ଓ ଆଦର୍ଶବାଦର ଅଫୁରନ୍ତ ପ୍ରେରଣା ଏବଂ ଦେଶ ଭକ୍ତିର ଗମ୍ଭୀର ପ୍ରଭାବ ତାଙ୍କ କଣ୍ଟକମୟ ଜୀବନକୁ ଶେଷପର୍ଯ୍ୟନ୍ତ କର୍ମ-ମୁଖର ରଖିଥିଲା । ଏ ପ୍ରକାର ନିରବଚ୍ଛିନ୍ନ ଆଦର୍ଶ-ଅନୁଭୂତି ଲାଭ କରିବା ପାଇଁ ପ୍ରକୃତ ଶହୀଦର ମନୋବୃତ୍ତି ତଥା ଅନୁରୂପ ଉଗ୍ର ଓ ଦୃଢ଼ ଜୀବନ-ଦର୍ଶନରେ ପୂର୍ଣ୍ଣ ଆସ୍ଥାଥିବା ଦରକାର । ଶହୀଦ୍ ଭଗତ ସିଂହଙ୍କଠାରେ ଏ ଦୁଇଟି ବିଷୟ ସର୍ବଦା ବିଦ୍ୟମାନ ଥିଲା ।

ଭଗତ ସିଂହଙ୍କର ସାହସିକତା ପୂର୍ଣ୍ଣ ବିପ୍ଳବାତ୍ମକ କାର୍ଯ୍ୟାବଳୀ, ପ୍ରଭାବଶାଳୀ ବକ୍ତବ୍ୟ ଏବଂ ଆତ୍ମୋତ୍ସର୍ଗ କରିବାରେ ତତ୍ପରତା ଦେଶର ଜନସାଧାରଣଙ୍କ ହୃଦୟରେ ଯେଉଁଳି ଆଲୋଡ଼ନ ସୃଷ୍ଟି କରିଥିଲା, ତାହା ଆଉ କୌଣସି ବ୍ୟକ୍ତି ପାଖରେ ସମ୍ଭବ ହୋଇ ପାରିନାହିଁ । ତେଣୁ ଜନ ସାଧାରଣଙ୍କ ହୃଦୟରେ ସେ ଏକ ଅପୂର୍ବ ସ୍ଥାନ ଲାଭ କରିପାରିଛନ୍ତି । ତାଙ୍କର ଅଦମ୍ୟ ସାହସ, ଉଚ୍ଚ ଆଦର୍ଶବାଦ, ଅକୃତ୍ରିମ ଦେଶ ଭକ୍ତି ଏବଂ ଗଭୀର ମାନବିକତା ବୋଧ ଯେ ଦେଶର ଅଗଣିତ ଯୁବକମାନଙ୍କ ପ୍ରେରଣାର ଉତ୍ସ ହୋଇ ରହିବ ସେଥିରେ ସନ୍ଦେହ ନାହିଁ ।

ଭଗତ୍ ସିଂହଙ୍କ ନିର୍ଭୀକତା ଏବଂ ଆତ୍ମବଳୀଦାନ ଦ୍ୱାରା ସେ ସମୟର ରାଜନୈତିକ ବାତାବରଣରେ ସୃଷ୍ଟି ହୋଇଥିବା ଚରମ ନିଷ୍କ୍ରିୟତା କ୍ରମଶଃ ଦୂରହୋଇ ଗଲା ଏବଂ ବିଦ୍ୟୁତ୍ ପ୍ରବାହ ଭଳି ସମସ୍ତଙ୍କ ମନରେ ନୂତନ ଚେତନାର ଜ୍ୟୋତି ଦେଖା ଦେଲା । 'ଇନ୍‌କଲାବ ଜିନ୍ଦାବାଦ୍' ସ୍ଲୋଗାନଟିକୁ ସ୍ୱୟଂ ଭଗତ ସିଂହହିଁ ଲୋକପ୍ରିୟ କରିଥିଲେ । ଯେଉଁ ସ୍ଲୋଗାନ ଦେଇ ସେ ବହୁଦିନ ତଳେ ବ୍ରିଟିସ୍ ନ୍ୟାୟାଳୟରେ ଏକ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲେ, ତାହା ଆଜି ଦେଶର ସର୍ବବି ସମସ୍ତଙ୍କ ମୁଖରେ ଗୁଞ୍ଜରିତ ହେଉଛି ।

ବୀର ସୈନିକ ଭଳି ଇଂରେଜ ବାହିନୀର ଗୁଳିବର୍ଷଣରେ ମରିବା ପାଇଁ ତାଙ୍କର ଯେଉଁ ପ୍ରବଳ ଇଚ୍ଛା ଥିଲା ତାହା ଇଂରେଜ ସରକାର ପୂରଣ କରାଇ ଦେଲେ ନାହିଁ । ଜଣେ ସାଧାରଣ ଅପରାଧୀ ଭଳି ତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା । ମୃତ୍ୟୁପରେ ତାଙ୍କ ଶରୀରକୁ ରାତିର ଅନ୍ଧକାର ମଧ୍ୟରେ ନଦୀକୂଳର ଏକ ନିର୍ଜ୍ଜନ ସ୍ଥାନରେ ପେଟ୍ରୋଲ ଢାଳି ପୋଡ଼ି ଦିଆଯାଇଥିଲା । ତାହାଙ୍କର ଭୌତିକ ଶରୀରକୁ ସିନା ନଷ୍ଟକରି ଦିଆଗଲା କିନ୍ତୁ ତାଙ୍କର ଆଦର୍ଶମୟ ସ୍ମୃତି ଅମର ରହିଲା । "ଇସ୍ ବାତକୀ କ୍ୟା ଚିନ୍ତା ହେ ଯଦି ଏକ୍ ମୁଠ୍‌ଠିଭର୍ ଧୂଲ୍, ଧୂଲ୍‌ମେ ମିଲ୍ ଜାତି ହେ" ଭଗତ୍ ସିଂହଙ୍କର ଜୀବନ ଦର୍ଶନ ସମ୍ବନ୍ଧରେ ଏହି ଅନୁପମବାଣୀ ଭାରତର ବହୁ ଯୁବକଯୁବତୀଙ୍କ ପ୍ରାଣରୁ ଉଦାସୀନତା ଦୂରକରି ସେମାନଙ୍କୁ କର୍ମ ତତ୍ପର କରାଇଥିଲା ।

**ଇନକିଲାବ ଜିନ୍ଦାବାଦ**

---